ଜାତୀୟ ଜୀବନ ଚରିତମାଳା

# ଗୋପବନ୍ଧୁ ଦାସ

ଶ୍ରୀରାମଚନ୍ଦ୍ର ଦାଶ



ଜାତୀୟ ଜୀବନ ଚରିତମାଳା

# ଗୋପବନ୍ଧୁ ଦାସ

ଶ୍ରୀରାମଚନ୍ଦ୍ର ଦାଶ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ମୁଖବନ୍ଧ

ଗୋପବନ୍ଧୁ ଦାସଙ୍କ ଜନ୍ମ ବର୍ତ୍ତମାନର ଓଡ଼ିଶା ରାଜ୍ୟର ବଙ୍ଗୋପସାଗର ତୀରରେ ଏକ ଛୋଟିଆ ଗାଆଁରେ ହୋଇଥିଲା। ତାଙ୍କର ପରିବାରଟି ଥିଲା ଏକ ସାଧାରଣ ପରମ୍ପରାନିଷ୍ଠ ବ୍ରାହ୍ମଣ ପରିବାର। ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବାରେ ତାଙ୍କର ଏକ ବିଶେଷ ଭୂମିକା ଥିଲା। ତେବେ ତାଙ୍କର ଏହି ଅବଦାନଟି ରୂପାୟିତ ହୋଇଥିଲା ତାଙ୍କ ମୃତ୍ୟୁର ଆଠବର୍ଷ ପରେ। 1920ରେ ଭାରତୀୟ ରାଷ୍ଟ୍ରୀୟ କଂଗ୍ରେସର ବାର୍ଷିକ ଅଧିବେଶନ ନାଗପୁରଠାରେ ଅନୁଷ୍ଠିତ ହୋଇଥିଲା। ସେଠାରେ ସେ ଓଡ଼ିଶାର ରାଜନୀତିକ ମହତ୍ତ୍ୱକୁ ସ୍ୱୀକୃତ କରାଇଥିଲେ ଏବଂ ଇତିପୂର୍ବରୁ ପ୍ରାଦେଶିକ ସଂକୀର୍ଣ୍ଣ ଜଳଧାରା ମାତ୍ର ହୋଇ ରହିଥିବା ଓଡ଼ିଶାକୁ ଭାରତୀୟ ରାଷ୍ଟ୍ରବାଦ ରୂପକ ମହାସ୍ରୋତରେ ମିଶାଇ ଦେଇଥିଲେ। ଓଡ଼ିଶା ପ୍ରଦେଶରେ କଂଗ୍ରେସକୁ ଗଠନ କରି ନିଜ ରାଜ୍ୟରେ ସେ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେଇଥିଲେ। ଏହି କାରଣରୁ ତାଙ୍କୁ ସେହି ପ୍ରଦେଶରେ ଭାରତୀୟ ରାଷ୍ଟ୍ରୀୟ କଂଗ୍ରେସର ଜନକ ବୋଲି କୁହାଯାଏ। ସେ ମହାତ୍ମାଗାନ୍ଧୀ ଓ ଲାଲା ଲାଜପତ୍ ରାୟଙ୍କର ନିକଟ ସହଯୋଗୀ ଥିଲେ ଓ ତାଙ୍କୁ ଭାରତର ବିଭିନ୍ନ ପ୍ରଦେଶର ଅଗ୍ରଗଣ୍ୟ ନେତା ମଧ୍ୟରେ ଜଣେ ବୋଲି କୁହାଯାଏ। ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ତାଙ୍କୁ ଦେଶରେ ଯଥେଷ୍ଟ ସମ୍ମାନ ମିଳି ନଥିଲା। ମାତ୍ର 51 ବର୍ଷ ବୟସରେ ତାଙ୍କର ମୃତ୍ୟୁ 1928ରେ ହିଁ ହୋଇ ଯାଇଥିଲା। ଦ୍ୱିତୀୟ କାରଣ ହେଲା, ଖ୍ୟାତି ପ୍ରତି ତାଙ୍କର ନିଜର ଉଦାସୀନତା, ଯାହାକି ଲାଲାଜୀଙ୍କ ଉଦ୍ଦେଶ୍ୟରେ ଲିଖିତ ତାଙ୍କର ଚିଠିରୁ ପରିଲକ୍ଷିତ ହୁଏ; ''ଆପଣ କହୁଛନ୍ତି ଯେ ମୋର କାର୍ଯ୍ୟକଳାପ ସବୁ ସମ୍ବାଦ ପତ୍ରରେ ପ୍ରକାଶିତ ହେବା ଉଚିତ, କିନ୍ତୁ ଖ୍ୟାତି ଅର୍ଜନର ବ୍ୟାକୁଳତା ମୋର ସ୍ୱଭାବରେ ଆଦୌ ନାହିଁ। ଦେଶରେ ସୁନାମ ଅର୍ଜିବା ବା ପ୍ରଖ୍ୟାତ ହେବାକୁ ମୋର ଜମାରୁ ଇଚ୍ଛାନାହିଁ। ଯେଉଁ କାର୍ଯ୍ୟର ଭାର ମୋତେ ମିଳିବ ଓ ଯାହାକିଛି ସେବା ମୋ ଶକ୍ତି ମୁତାବକ କରିପାରିବି, ସେଥିପାଇଁ ମୁଁ ସଦାସର୍ବଦା ତତ୍ପର ରହିଥିବି। ଲୋକେ ତାକୁ ଜାଣିଲେ ନ ଜାଣିଲେ ସେଥିରେ ବା କଣ ଯାଏ ଆସେ? ମୁଁ ତ ଆଜୀବନ ଜନତାର ସେବାକୁ ହିଁ ନିଜର ଲକ୍ଷ୍ୟ କରି ଦେଇଛି ଓ ପରମେଶ୍ୱରଙ୍କ କୃପାରୁ ମୋ ନିଜର ଦୃଷ୍ଟିଭଙ୍ଗୀ ଓ କ୍ଷମତା ଅନୁସାରେ ଜନତାର ସେବା କରିଛି।''

ତେବେ ଜନତାଙ୍କ ମଧ୍ୟରେ ତାଙ୍କର ସୁନାମ ରହିଛି ଓ ପ୍ରତ୍ୟେକ ଓଡ଼ିଆର ହୃଦୟରେ ତାଙ୍କର ସ୍ଥାନ ସାଦରେ ସାଇତା ହୋଇ ରହିଛି। ଜାତୀୟ ସ୍ତରରେ ତାଙ୍କୁ କେବଳ ଏକମାତ୍ର ସମ୍ମାନ ମିଳିଛି। ଯେତେବେଳେ ଜାନୁଆରୀ 1964ରେ ଭାରତୀୟ ରାଷ୍ଟ୍ରୀୟ କଂଗ୍ରେସର ବାର୍ଷିକ ଅଧିବେଶନ ଭୁବନେଶ୍ୱରରେ ହେଲା, ସେତେବେଳେ ତାଙ୍କ ସ୍ମୃତିରେ ଗୋଟିଏ ଡ଼ାକଟିକଟ ବାହାରି ଥିଲା ଓ ଯେଉଁ ସ୍ଥାନରେ ଅଧିବେଶନଟି ବସିଥିଲା ତାହାର ନାମ ମଧ୍ୟ ଗୋପବନ୍ଧୁ ନଗର ରଖାଯାଇଥିଲା। ଓଡ଼ିଶାବାସୀଙ୍କୁ ଏତିକି ଜାଣି ଆନନ୍ଦ ହୋଇଛି ଯେ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ତାଙ୍କର ଜୀବନୀ ପ୍ରକାଶ କରିବାକୁ ସ୍ଥିର କରିଛନ୍ତି।

ଅଖିଳ ଭାରତୀୟ ଲୋକସେବକ ମଣ୍ଡଳର ଭୂତପୂର୍ବ ସଭାପତି, ପଣ୍ଡିତ ପୁରୁଷୋତ୍ତମ ଦାସ ଟଣ୍ଡନଙ୍କ ପ୍ରତି କୃତଜ୍ଞତା ଜଣାଉଛି ଯେ, ସେ ତାଙ୍କର ଓଡ଼ିଆ ସହଯୋଗୀ, ଶ୍ରୀ ରାଧାନାଥ ରଥଙ୍କ ମାଧ୍ୟମରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜୀବନୀ ଲେଖିବାର ଆଦେଶ ଦେଇଥିଲେ। ସ୍ୱର୍ଗୀୟ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କଠାରେ ମଧ୍ୟ ମୁଁ କୃତଜ୍ଞ କାରଣ ସେ ମୋର ପ୍ରଥମ ପୁସ୍ତକର ସମର୍ପଣ ସ୍ୱୀକାର କରିଥିଲେ ଓ ତାହାର ପ୍ରଶଂସା କରି ମୋର ଉତ୍ସାହ ବର୍ଦ୍ଧନ କରିଥିଲେ। ଏହି ପୁସ୍ତକ ଲାଗି ସହାୟକ ସାମଗ୍ରୀମାନ ସମାଜର ସମ୍ପାଦକ ଓ ଓଡ଼ିଶା ପ୍ରାନ୍ତୀୟ ଲୋକସେବକ ମଣ୍ଡଳର ସଭାପତି, ଶ୍ରୀ ରାଧାନାଥ ରଥଙ୍କ ସଦୟ ସାହାଯ୍ୟ ବିନା ଏକତ୍ରିତ କରିବା ମୋ ପକ୍ଷରେ ଅସମ୍ଭବ ହୋଇଥାନ୍ତା। ସେ ଓଡ଼ିଶାର ଶିକ୍ଷା, ବିତ୍ତ, ବିକାଶ ବିଭାଗମାନଙ୍କର ମନ୍ତ୍ରୀ ଥିଲେ। ଅଖିଳ ଭାରତୀୟ ଲୋକସେବକ ମଣ୍ଡଳର ସଭାପତି, ଉତ୍ତରପ୍ରଦେଶର ଭୂତପୂର୍ବ ରାଜ୍ୟପାଳ ଓ ଓଡ଼ିଶାର ଭୂତପୂର୍ବ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଶ୍ୱନାଥ ଦାସ ମଧ୍ୟ କୃତଜ୍ଞତା ଭାଜନ। ସମାଜର ଭୂତପୂର୍ବ ବାର୍ତ୍ତା ସମ୍ପାଦକ, ଶ୍ରୀ ଉଦୟନାଥ ଷଡ଼ଙ୍ଗୀ, ସତ୍ୟବାଦୀ ପ୍ରେସ୍‌ର ପ୍ରଥମ ପରିଚାଳକ, ଶ୍ରୀ ସତ୍ୟବାଦୀ ତ୍ରିପାଠୀ ଓ ଗୋପବନ୍ଧୁ ଦାସଙ୍କର ଅନ୍ୟାନ୍ୟ ଅନେକ ମହାନୁଭବ ସହକର୍ମୀଙ୍କ ନିକଟରେ ମୁଁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି। ଏହା ପାଠକ ମହଲରେ ଆଦୃତ ହେଲେ ମୁଁ ନିଜକୁ କୃତାର୍ଥ ମଣିବି।

ଶ୍ରୀରାମଚନ୍ଦ୍ର ଦାଶ

# ସୂଚୀପତ୍ର

# ଶୈଶବ

ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ଥାନାରେ ଥିବା ସୁଆଣ୍ଡୋ ନାମକ ଗୋଟିଏ କ୍ଷୁଦ୍ର ପଲ୍ଲୀରେ ଗୋପବନ୍ଧୁ ଦାସ 1877 ଅକ୍ଟୋବର ନଅ ତାରିଖ ଦିନ ଭୂମିଷ୍ଠ ହୋଇଥିଲେ। ଗଙ୍ଗା ଓ ଗୋଦାବରୀ ପରି ପବିତ୍ର ବିବେଚିତ ହେଉଥିବା ଭାର୍ଗବୀ ନଦୀକୂଳରେ ଏହି ଗ୍ରାମଟି ଅବସ୍ଥିତ। ତାଙ୍କ ପିତା ଦୈତାରୀ ଦାସ ଚାରିଥର ବିବାହ କରିଥିଲେ। ତାଙ୍କ ତୃତୀୟ ପତ୍ନୀ ସ୍ୱର୍ଣ୍ଣମୟୀ ହେଉଛନ୍ତି ଗୋପବନ୍ଧୁଙ୍କ ଜନନୀ।

ଗୋପବନ୍ଧୁ ବଡ଼ କଷ୍ଟରେ ଜନ୍ମ ହୋଇଥିଲେ। କୁହାଯାଏ ଯେ, ତାଙ୍କ ମା ତିନିଦିନ ଅସହ୍ୟ ପ୍ରସବବେଦନା ଅନୁଭବ କରିଥିଲେ, ଶେଷରେ ତାଙ୍କୁ ସ୍ୱପ୍ନାଦେଶ ହେଲା ଯେ ତାଙ୍କ ଗର୍ଭରୁ ଜାତ ହେବାକୁ ଥିବା ପୁତ୍ର ତାଙ୍କର ହୋଇ ରହିବ ନାହିଁ। ସେ ନିଜ ଘର ଛାଡ଼ି କୌଣସି ପଡ଼ିଶା ଘରକୁ ଚାଲିଗଲେ ପିଲାଟି ସହଜରେ ଜନ୍ମ ହୋଇ ପଡ଼ିବ। ତାହା ହିଁ ହେଲା। ସ୍ୱର୍ଣ୍ଣମୟୀଙ୍କୁ ସେହି ଗ୍ରାମର ଚକ୍ରଧର ଦାସଙ୍କ ଘରକୁ ନିଆଗଲା ଏବଂ ସେ ତାଙ୍କ ଘରେ ପାଦ ପକାଇବା ମାତ୍ରକେ ଗୋପବନ୍ଧୁ ଜନ୍ମ ହୋଇଥିଲେ। ସେ କେବଳ ନବଜାତ ପୁତ୍ରର ମୁହଁ ଦେଖିବା ସୌଭାଗ୍ୟ ଲାଭ କରିଥିଲେ, କାରଣ ଅଳ୍ପଦିନ ପରେ ତାଙ୍କର ମୃତ୍ୟୁ ହୋଇଥିଲା। ଦୈତ୍ୟାରୀଙ୍କର ନାରାୟଣ ଓ ଗୋପବନ୍ଧୁ, ଏହିପରି ଦୁଇପୁଅ ଥିଲେ। ଦୈତ୍ୟାରୀଙ୍କ ବଡ଼ଭାଇ ଦୀନବନ୍ଧୁ, ନାରାୟଣଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ। ଦୈତ୍ୟାରୀ ପୁଣିଥରେ ବିବାହ କରିନଥିଲେ ଚଳିଥାନ୍ତା କିନ୍ତୁ ପିଲା ଦୁଇଟି ଅତିଛୋଟ ଥିଲେ ଓ ସେମାନଙ୍କ ଯତ୍ନନେବା ଲାଗି ପରିବାରରେ ଅନ୍ୟ କୌଣସି ସ୍ତ୍ରୀ ଲୋକ ନ ଥିବାରୁ ବନ୍ଧୁବାନ୍ଧବ ଓ ଶୁଭକାଂକ୍ଷୀ ଲୋକଙ୍କ ପରାମର୍ଶ ଗ୍ରହଣ କରି ସେ ଚତୁର୍ଥ ଥର ବିବାହ କରିଥିଲେ। ଚତୁର୍ଥ ବିବାହ ଓ ବୋହୂଅଣା ଭିତରେ ସାମାନ୍ୟ ବ୍ୟବଧାନ ଥିଲା, ତେଣୁ ଦୈତ୍ୟାରୀଙ୍କ ବିଧବା ଭଉଣୀ ଶ୍ରୀମତୀ କମଳାଦେବୀ ଗୋପବନ୍ଧୁଙ୍କ ପାଳନ ଦାୟିତ୍ୱ ବହନ କରିଥିଲେ।

250 ଜଣ ଲୋକ ଥିବା ମୋଟେ 40 ଗୋଟି ପରିବାର ସୁଆଣ୍ଡୋ ଗ୍ରାମରେ ବାସ କରୁଥିଲେ। ପୁରୀ ଜିଲ୍ଲାର ସବୁ ବ୍ରାହ୍ମଣ ଶାସନ ପରି ଏହି ଗ୍ରାମଟି ମଧ୍ୟ ସ୍ୱୟଂ-ସଂପୂର୍ଣ୍ଣ ଥିଲା; ଏଥିରେ ଦୁଇ ଗୋଟି ଚାଷୀ ପରିବାର, ତିନିଗୋଟି ତନ୍ତୀ ପରିବାର ଓ ପ୍ରାୟ ପନ୍ଦର ଗୋଟି ହରିଜନ ପରିବାର ଥିଲେ। ଅନ୍ୟ ସମସ୍ତେ ଥିଲେ ବ୍ରାହ୍ମଣ।

## ତାଙ୍କ ବଂଶାବଳି

ଗୋପବନ୍ଧୁଙ୍କ ପୂର୍ବ ପୁରୁଷ ଗଙ୍ଗବଂଶ ରାଜାମାନଙ୍କ ନିମନ୍ତ୍ରଣରେ ଯାଜପୁରରୁ ଆସି ବିଲହଣା ହରିହରପୁରରେ ବସତି ସ୍ଥାପନ କରିଥିଲେ ।

ଗୋପବନ୍ଧୁ କୌଶିକ ଗୋତ୍ରୀୟ ବ୍ରାହ୍ମଣ ପରିବାରର ସନ୍ତାନ । ତାଙ୍କ ପିତାମହ ଭଗବାନ ଅତ୍ୟନ୍ତ ଧର୍ମପ୍ରାଣ ଥିଲେ । ସେ ନିରକ୍ଷର ହେଲେ ହେଁ ଓଡ଼ିଶାରେ ବିଦ୍ୟାଦାତ୍ରୀ ରୂପେ ପୂଜିତା ସାରଳାଙ୍କ ଭକ୍ତ ଥିଲେ । ଦେବୀଙ୍କ ପ୍ରତି ତାଙ୍କର ଏପରି ଅଚଳା ଭକ୍ତି ଥିଲା ଯେ ସେ ତାଙ୍କ ସନ୍ତୋଷ ବିଧାନ ଲାଗି ନିଜ ଜିଭ କାଟି ମୃତ୍ୟୁ ବରଣ କରିଥିଲେ । ଏହି ଭଗବାନ, ଗୋପବନ୍ଧୁଙ୍କ ପିତାମହ ହୋଇଥିବାରୁ ନିଜ ପିତୃପୁରୁଷଙ୍କ ଏତାଦୃଶ ଭକ୍ତି ଯୋଗୁ ସେ ଏପରି ବିରାଟ ବ୍ୟକ୍ତି ହୋଇ ପାରିଥିଲେ ବୋଲି କୁହାଯାଏ । ଏହି ଭଗବାନଙ୍କର ଦୁଇଟି ପୁଅ ଥିଲେ । ଦୀନବନ୍ଧୁ ଓ ଦୈତ୍ୟାରୀ । ଦୀନବନ୍ଧୁ ପିତାଙ୍କ ଠାରୁ ଉତ୍ତରାଧିକାର ସୂତ୍ରରେ ବୋଧହୁଏ ଧର୍ମପରାୟଣତା ଲାଭ କରିଥିଲେ ବୋଲି ଶୈଶବରୁ ଆଧ୍ୟାତ୍ମିକ ଚେତନାର ସୂଚନା ଦେଇଥିଲେ । କାଳେ ସେ ବୈରାଗୀ ହୋଇ ଚାଲିଯିବେ ଓ ତପସ୍ୟା କରିବେ, ଏହି ଆଶଙ୍କାରେ ତାଙ୍କ ପିତାମାତା ତାଙ୍କୁ ଅତି ଅଳ୍ପ ବୟସରେ ବିବାହ କରାଇ ଦେଇଥିଲେ । ଏହିପରି ବାଧ୍ୟ ହୋଇ ଦୀନବନ୍ଧୁ କିଛି କାଳ ପର୍ଯ୍ୟନ୍ତ ସୁଖୀ ବିବାହିତ ଜୀବନ ଯାପନ କରିଥିଲେ । ତାଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହୋଇଥିଲା କିନ୍ତୁ ସେ ବେଶି ଦିନ ବଞ୍ଚି ନ ଥିଲା । ଏହାଦ୍ୱାରା ତାଙ୍କ ସନ୍ୟାସ ଗ୍ରହଣ ଇଚ୍ଛା ତ୍ୱରାନ୍ୱିତ ହୋଇଥିଲା ଏବଂ ଦିନେ ସେ କାହାକୁ ନ ଜଣାଇ ଅନ୍ଧାର ରାତିରେ ଘର ଛାଡ଼ି ଚାଲି ଯାଇଥିଲେ । ଘର ଛାଡ଼ିବା ପରେ ଦୀନବନ୍ଧୁ ଭାରତର ବିଭିନ୍ନାଞ୍ଚଳରେ ବୁଲି ବୁଲି ଶେଷରେ ନବଦ୍ୱୀପଧାମରେ ପହଞ୍ଚି ଜଣେ ଶ୍ରୀକୃଷ୍ଣ ଭକ୍ତଙ୍କ ଗୃହରେ ଆଶ୍ରୟ ନେଇ ଥିଲେ । ପ୍ରବାଦ ଅଛି ଯେ ଦୀନବନ୍ଧୁଙ୍କୁ ଅତିଥି ରୂପେ ପାଇବାଦିନ ରାତିରେ ମହାପ୍ରଭୁ ଶ୍ରୀକୃଷ୍ଣ ସ୍ୱପ୍ନରେ ଆବିର୍ଭୂତ ହୋଇ ଗୃହସ୍ୱାମୀଙ୍କୁ କହିଲେ ଯେ ସେ ଆଉ ବେଶୀ ଦିନ ତାଙ୍କ ଘରେ ରହିବାକୁ ଚାହୁଁ ନାହାନ୍ତି; ତେଣୁ ରାତି ପାହିବା ପରେ ସେ ତାଙ୍କ ଘରେ ଥିବା ଶ୍ରୀକୃଷ୍ଣଙ୍କ ମୂର୍ତ୍ତିକୁ ଅତିଥିଙ୍କୁ ଦେଇ ଦିଅନ୍ତୁ । ତଦନୁସାରେ ଦୀନବନ୍ଧୁଙ୍କୁ ଉକ୍ତ ମୂର୍ତ୍ତିଟି ମିଳିଲା । ସେ ଏହି ଘଟଣାରେ ଏତେ ଅଭିଭୂତ ହୋଇ ଗଲେ ଯେ ସେ ଆଉ ପରିବ୍ରାଜକ ନ ହୋଇ ମୂର୍ତ୍ତି ସହ ଗାଁକୁ ଫେରି ଆସି ନିଜ ଘରେ ଏହାକୁ ପ୍ରତିଷ୍ଠା କରି ଶ୍ରୀକୃଷ୍ଣଙ୍କ ସେବକ ରୂପେ ଜୀବନଯାପନ କଲେ । ସେ ଭକ୍ତିପୂର୍ଣ୍ଣ ଜୀବନ ଯାପନ କରୁଥିଲେ ହେଁ ସେଥିରେ ସନ୍ତୁଷ୍ଟ ନ ହୋଇ କିଛି ଦିନ ପରେ ପୁଣି ଥରେ କୌଣସି ତୀର୍ଥକୁ ଯାଇ ତପସ୍ୟା କରିବାକୁ ମନ ବଳାଇ ଥିଲେ । ତେଣୁ ସେ ତାଙ୍କର ସମସ୍ତ ଭୂସଂପତ୍ତି ଓ ଅନ୍ୟାନ୍ୟ ପାର୍ଥିବ ସଂପଦକୁ ବିନୋଦବିହାରୀ ନାମରେ ନାମିତ ସେହି ମହାପ୍ରଭୁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରି ଗୃହତ୍ୟାଗ କଲେ । ଏହା ପରେ ବିନୋଦବିହାରୀଙ୍କ ସେବାପୂଜା ଦାୟିତ୍ୱ ଗୋପବନ୍ଧୁଙ୍କ ପିତା ଦୈତ୍ୟାରୀଙ୍କ ଉପରେ ପଡ଼ିଲା । ପିଲାଦିନେ ଏହିପରି ଭକ୍ତି ଓ ଆଧ୍ୟାତ୍ମିକତା ମଧ୍ୟରେ ପାଳିତ

ହୋଇଥିବା ସାଧାରଣ ବାଳକ ବାଳିକାମାନଙ୍କ ଠାରେ ଦେଖା ଯାଉ ନ ଥିବା ବହୁ ଅସାଧାରଣ ଗୁଣ ଗୋପବନ୍ଧୁଙ୍କ ଠାରେ ଦେଖା ଯାଇଥିଲା ।

ତାଙ୍କ ଜନ୍ମର ଅବ୍ୟବହିତ ପରେ ତାଙ୍କ ମାତା ଅଳ୍ପ ବୟସରେ ପରଲୋକ ଗମନ କରିଥିବାରୁ ଗୋପବନ୍ଧୁ ନିଜ ଦୁର୍ଭାଗ୍ୟ କଥା କେବେ ଭୁଲି ପାରି ନଥିଲେ । ଅକାରଣ ନିର୍ଦ୍ଦୟ ଭାଗ୍ୟ ତାଙ୍କୁ ନିଜ ମାତାଙ୍କ ସ୍ନେହ ଓ ଯତ୍ନରୁ ବଞ୍ଚିତ କରି ଥିବାରୁ ସେ ବାଂରବାର ଏହି କଥାକୁ ମନେ ପକାଇ ବିଳାପ କରିଛନ୍ତି । ସେ ବିନା ଦ୍ୱିଧାରେ ନିଜ ବନ୍ଧୁବାନ୍ଧବ, ବିଶେଷତଃ ପିଉସୀ କମଳା ଦେବୀଙ୍କ ପ୍ରତି ବାରଂବାର କୃତଜ୍ଞତା ଜ୍ଞାପନ କରିଛନ୍ତି । ମାତୃହୀନ ବାଳକର ଦୁଃଖପୂର୍ଣ୍ଣ ଜୀବନ କେଡ଼େ ମର୍ମାନ୍ତିକ ସେହି କଥା ସେ କବିତା ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ଦୁଃଖ ହିଁ ଜୀବନରେ ମହାନ୍ ଶିକ୍ଷା ଦିଏ । ଗୋପବନ୍ଧୁ ଏହି ଦୁଃଖ ସହିତ ଏତେ ପରିମାଣରେ ପରିଚିତ ଥିଲେ ଯେ ମଣିଷର ଦୁଷ୍କର୍ମ ଓ ପ୍ରାକୃତିକ ବିପଦ ଯୋଗୁଁ ସୃଷ୍ଟି ହୋଇଥିବା ସର୍ବବିଧ ଦୁର୍ଭାଗ୍ୟ ବିରୁଦ୍ଧରେ ସଂଗ୍ରାମ କରିବା ଲାଗି ସେ କଠୋର ସଂକଳ୍ପବଦ୍ଧ ହୋଇଥିଲେ । ତାଙ୍କର ଏକାବନ ବର୍ଷର ସ୍ୱଳ୍ପକାଳ ଜୀବନରେ ସେ ଆର୍ତ୍ତ ମାନବର ସେବାରେ ନିଜକୁ ନିୟୋଜିତ କରିଥିଲେ, ଯେପରିକି ଅନ୍ୟ କୌଣସି ପିଲା ନିଜ ପିତାମାତାଙ୍କ ସ୍ନେହରୁ ବଞ୍ଚିତ ନ ହୁଏ । ପୁନଶ୍ଚ ସେ ମାତୃଭୂମି ଉତ୍କଳ ଓ ତା ମାଧ୍ୟମରେ ଭାରତର ସେବାରେ ନିଜକୁ ପୂର୍ଣ୍ଣ ପ୍ରାଣରେ ଉତ୍ସର୍ଗ କରିଥିଲେ ।

## ଗ୍ରାମ ପାଠଶାଳାରେ

ଗୋପବନ୍ଧୁ ଗୋଟିଏ ମଧ୍ୟବିତ୍ତ ପରିବାରରେ ଜନ୍ମ ହୋଇଥିଲେ । ଆଧୁନିକ ଅର୍ଥନୈତିକ ପରିସ୍ଥିତିକୁ ବିଚାର କଲେ ସେ ଗୋଟିଏ ଦରିଦ୍ର ବାଳକ ଥିଲେ । ତାଙ୍କ ପିଲା ଦିନେ, ଅର୍ଥାତ ଊନବିଂଶ ଶତାବ୍ଦୀର ଶେଷ ପାଦରେ ତାଙ୍କର ଅବସ୍ଥା ଏକ ପ୍ରକାର ସ୍ୱଚ୍ଛଳ ଥିଲା ବୋଲି କୁହାଯାଇ ପାରେ, କାରଣ ତାଙ୍କ ପିତା ଦୈତ୍ୟାରୀ ଜଣେ ମୁକ୍ତାର ଥିଲେ ଓ ତାଙ୍କର ଭଲ ବ୍ୟବସାୟ ଥିଲା । ନିଜ ପରିବାରର ଆଧାତ୍ମିକ ପରଂପରା ରକ୍ଷା କରି ଏକ ପ୍ରକାର ଆଧୁନିକ ବାୟୁମଣ୍ଡଳରେ ନିଜ ପୁଅ ଦୁହିଁଙ୍କୁ ମଣିଷ କରିବା ଲାଗି ଦୈତ୍ୟାରୀଙ୍କ ଆଗ୍ରହ ଥିଲା । ସେତେବେଳେ ପ୍ରତି ଗ୍ରାମରେ ବା ଏକାଧିକ ଗ୍ରାମ ପାଇଁ ସ୍କୁଲ କଲେଜ ନ ଥିଲା; ତେଣୁ ନିଜ ପୁଅ ଦୁହିଁଙ୍କୁ ପାଠ ପଢ଼ାଇବା ଲାଗି ସେ ଜଣେ ଅବଧାନଙ୍କୁ ନିଯୁକ୍ତ କରିଥିଲେ । ଗ୍ରାମ ପାଠଶାଳାର ଶିକ୍ଷା ପ୍ରଣାଳୀ ଆଧୁନିକ ପ୍ରାଥମିକ ବିଦ୍ୟାଳୟର ପାଠ୍ୟକ୍ରମ ଅନୁରୂପ ନ ଥିଲା । ପାଠଶାଳରେ ବ୍ୟବହାରୋପଯୋଗୀ ପାଠ ପଢ଼ା ଯାଉଥିଲା; ଗ୍ରାମ୍ୟଜୀବନ ଯାପନ କରିବା ଲାଗି ଆବଶ୍ୟକ ଲିଖନ, ପଠନ ଓ ଗଣିତ ପାଠଶାଳା ଗୁଡ଼ିକରେ ଶିକ୍ଷା ଦିଆଯାଉଥିଲା । ଗୋପବନ୍ଧୁଙ୍କ ଅକ୍ଷର ଶିକ୍ଷା ସରିଯିବା ପରେ ସେ ପ୍ରତ୍ୟହ କୁଳଦେବତା ବିନୋଦବିହାରୀଙ୍କ ପାଖରେ ଜଗନ୍ନାଥ ଦାସଙ୍କ ଭାଗବତରୁ ଅଧ୍ୟାୟେ ଲେଖାଁଏ ପାଠ କରିବାକୁ ପିତାଙ୍କଠାରୁ ନିର୍ଦ୍ଦେଶ ପାଇଲେ । ସେ ଭାଗବତର ଭାଷା, ଭାବ ଓ ଶୈଳୀ ଦ୍ୱାରା ଏପରି ମୁଗ୍ଧ ହୋଇଗଲେ ଯେ କ୍ରମେ ନିଜେ ଗୋଟିଏ ଗୋଟିଏ

ଗୀତ ଲେଖି ଗାଇବାକୁ ଅଭ୍ୟାସ କଲେ। ଭାଗବତ ବୋଲି ବୋଲି କେତେଗୋଟି ଅଧ୍ୟାୟ ତାଙ୍କର ମୁଖସ୍ଥ ହୋଇଗଲା। ଏହି ଧର୍ମ ପୁସ୍ତକଟିକୁ ବୁଝିବା ଲାଗି ତାଙ୍କର ଯଥେଷ୍ଟ ଜ୍ଞାନ ନ ଥିଲେ ହେଁ ସେ ବନ୍ଧୁମାନଙ୍କ ସଙ୍ଗେ ଆଳାପ ଆଲୋଚନା ବେଳେ ଭାଗବତରେ ପଙ୍‌କ୍ତି ଉଦ୍ଧାର କରି ପାରୁଥିଲେ। ଗୋପବନ୍ଧୁଙ୍କ ମନର ଏପରି ଅସାଧାରଣ ଗତି ତାଙ୍କ ଶିକ୍ଷକଙ୍କୁ ଭଲ ଲାଗୁ ନ ଥିଲା। ସେ ଗୋପବନ୍ଧୁଙ୍କୁ ଜମିଦାରୀ ହିସାବ ଲେଖିବା ଲାଗି କହିଲେ ସେ କବିତା ଲେଖୁଥିଲେ। ଏହି ପାରଂପରିକ ଗ୍ରାମ୍ୟ ଅବଧାନ ଏଭଳି ବ୍ୟବହାର ବୁଝି ନ ପାରି ଏହି ଅସାଧାରଣ ଛାତ୍ରଟିକୁ କର୍ତ୍ତବ୍ୟରେ ଅବହେଳା ଯୋଗୁଁ ମାଡ଼ ଖୁଆଇବା ଉଦ୍ଦେଶ୍ୟରେ ତାଙ୍କ ପିତାଙ୍କ ନିକଟରେ ଆପତ୍ତି କଲେ। ଅବଧାନଙ୍କ ତୁଳନାରେ ଦୈତ୍ୟାରୀ ନିଜ ପୁଅକୁ ଭଲ ଭାବରେ ଜାଣିଥିଲେ। ଗୋପବନ୍ଧୁଙ୍କୁ ଦଣ୍ଡ ଦେବା ପରିବର୍ତ୍ତେ ସେ ତାଙ୍କ ମାନସିକ ବିକାଶ ଲକ୍ଷ୍ୟ କରି ପ୍ରଶଂସା କରୁଥିଲେ। ବେଳେ ବେଳେ ସନ୍ଧ୍ୟା ବେଳେ ଗାଁର ବୟସ୍କ ଲୋକମାନେ ଏକାଠି ବସି ଆଲୋଚନା କରୁଥିବା ସମୟରେ ଦୈତ୍ୟାରୀ ଗୋପବନ୍ଧୁଙ୍କ ରଚିତ କବିତା ପାଠ କରି ପୁଅକୁ କବିତା ରଚନା କାର୍ଯ୍ୟରେ ଆଗେଇ ଯିବାକୁ ଉତ୍ସାହିତ କରୁଥିଲେ। ଏହିପରି ଗୋପବନ୍ଧୁଙ୍କ ବାଲ୍ୟ ଶିକ୍ଷା ତାଙ୍କ ମନ ଓ ଚରିତ୍ରକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ଓ ପରବର୍ତ୍ତୀ କାଳରେ ସେ ଶ୍ରୀମଦ୍ ଭାଗବତର ପ୍ରଣେତା ଜଗନ୍ନାଥ ଦାସଙ୍କ ପ୍ରତି ନିଜ କୃତଜ୍ଞତା ଜ୍ଞାପନ କରିଥିଲେ।

ନିଜେ ଜଣେ ମୁକ୍ତାର ଥିଲେ ବୋଲି ଦୈତ୍ୟାରୀ ପୁଅର ପାଠଶାଳା ଶିକ୍ଷାରେ ସନ୍ତୁଷ୍ଟ ନ ଥିଲେ। ସେ ଜାଣିଥିଲେ ଯେ ପ୍ରାଥମିକ ସ୍ତରରୁ ଆରମ୍ଭ କରି ଗୋପବନ୍ଧୁ ଗୋଟିଏ ଅନୁମୋଦିତ ପ୍ରଣାଳୀରେ ଶିକ୍ଷା ଲାଭ ନ କଲେ ଦେଶରେ କ୍ରମେ ଲୋକପ୍ରିୟ ହୋଇ ଉଠୁଥିବା ସ୍ବୀକୃତ ପାଶ୍ଚାତ୍ୟ ଶିକ୍ଷା ଲାଭ କରି କ୍ରମୋନ୍ନତି କରି ପାରିବେ ନାହିଁ, ଦୁର୍ଭାଗ୍ୟକ୍ରମେ ତାଙ୍କ ଗାଁ ପାଖରେ କୌଣସି ସ୍କୁଲ ନ ଥିଲା ଓ ଦୈତ୍ୟାରୀ ମଧ୍ୟ ପୁଅ ଦୁହିଁଙ୍କୁ ପ୍ରତ୍ୟହ ତିନିଚାରି ମାଇଲ ଯିବା ଆସିବା କରି ନିକଟବର୍ତ୍ତୀ ସ୍କୁଲରେ ପଢ଼ାଇବାକୁ ଚାହୁଁ ନ ଥିଲେ। ତେଣୁ ସେ ନିଜ ପୁଅମାନଙ୍କ ଶିକ୍ଷା ଲାଗି ସୁଆଣ୍ଡୋ ଗ୍ରାମରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କଲେ। ନାରାୟଣ ଓ ଗୋପବନ୍ଧୁ ଉଭୟ ଏହି ବିଦ୍ୟାଳୟରେ ପଢ଼ିଲେ, କିନ୍ତୁ ବୁଦ୍ଧି ଓ ବିଚକ୍ଷଣତାରେ ଗୋପବନ୍ଧୁ ଭାଇନାଙ୍କୁ ଟପି ଗଲେ।

ଗୋପବନ୍ଧୁଙ୍କୁ ପାଶ୍ଚାତ୍ୟ ଶିକ୍ଷା ଦେବା ଲାଗି ଦୈତ୍ୟାରୀଙ୍କର ଆଗ୍ରହ ଥିଲା କିନ୍ତୁ ସେ ପ୍ରାଚୀନ ପରଂପରା ଠାରୁ ନିଜକୁ ବିଚ୍ଛିନ୍ନ କରି ପାରୁ ନଥିଲେ। ସେତେବେଳେ ବ୍ରାହ୍ମଣମାନଙ୍କ ମଧ୍ୟରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିଲା ଏବଂ ପ୍ରାଥମିକ ବିଦ୍ୟାଳୟର ଛାତ୍ର ଗୋପବନ୍ଧୁଙ୍କୁ ମାତ୍ର ବାରବର୍ଷ ବୟସରେ ପାଖ ଗାଁ ବାଙ୍ଗୁରବା (ଗଦାଧରପୁର) ର ଅପ୍ତି (ମୋତି)ଙ୍କ ସହିତ ବିବାହ କରି ଦିଆଗଲା। ଏହି ବାଲ୍ୟ ବିବାହ ଗୋପବନ୍ଧୁଙ୍କ ଉଚ୍ଚ ଶିକ୍ଷା ପାଇଁ ବାଧା ସୃଷ୍ଟି କରି ନଥିଲା। ଏହା ପ୍ରକୃତରେ ଏକ ପ୍ରକାର କଣ୍ଢେଇ ବାହାଘର ଥିଲା ଓ ବୋହୂ ଘରକୁ ଆସିବା

ଡେରି ଥିଲା। ତେଣୁ ଗୋପବନ୍ଧୁ ଉଚ୍ଚ ପ୍ରାଥମିକ ଶିକ୍ଷା ଶେଷ କରି ନିଜ ଗାଁ ଠାରୁ ଆଠ କିଲୋମିଟର ଦୂରରେ ଥିବା ରୂପଦେଇପୁର ମଧ୍ୟଭର୍ଣ୍ଣାକୁଲର ସ୍କୁଲରେ ନାମ ଲେଖାଇଲେ। ଏବେ ଓଡ଼ିଶାରେ ମଧ୍ୟ ଭର୍ଣ୍ଣାକୁଲର ସ୍କୁଲ ଦେଖିବାକୁ ମିଳେ ନାହିଁ; ତା ବଦଳରେ ଚାରିଆଡ଼େ ମଧ୍ୟ ଇଂରାଜୀ ସ୍କୁଲ ପ୍ରତିଷ୍ଠିତ ହୋଇଛି। ନିଜେ ଗୋପବନ୍ଧୁ ବିହାର-ଓଡ଼ିଶା ବିଧାନ ପରିଷଦର ସଭ୍ୟ ଥିବା ବେଳେ ଏଥିପାଇଁ ଖୁବ୍ ଚେଷ୍ଟା କରିଥିଲେ। ମଧ୍ୟଭର୍ଣ୍ଣାକୁଲର ଓ ମଧ୍ୟ ଇଂରାଜୀ ବିଦ୍ୟାଳୟ ମଧ୍ୟରେ ଏତିକି ପାର୍ଥକ୍ୟ ଥିଲା ଯେ ଉଭୟ ବିଦ୍ୟାଳୟରେ ଏକା ପାଠ୍ୟକ୍ରମ ଅନୁସୃତ ହେଉଥିଲେ ହେଁ ଭର୍ଣ୍ଣାକୁଲର ସ୍କୁଲରେ ଇଂରାଜୀ ଶିକ୍ଷା ଦିଆ ନଯାଇ ଗଣିତ ଓ ସାହିତ୍ୟ ଶିକ୍ଷା ଉପରେ ଗୁରୁତ୍ୱ ଦିଆ ଯାଉଥିଲା।

## ମଧ୍ୟଭର୍ଣ୍ଣାକୁଲର ସ୍କୁଲ

ଏହିଠାରେ ଗୋପବନ୍ଧୁଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା ଓ ଏଠାର ଗୋଟିଏ ସଂପର୍କ ସାରା ଜୀବନ ଗୋପବନ୍ଧୁଙ୍କୁ ଛାଡ଼ି ନ ଥିଲା। ରୂପଦେଇପୁର ମଧ୍ୟଭର୍ଣ୍ଣାକୁଲର ସ୍କୁଲର ହେଡ୍‌ପଣ୍ଡିତ ବୀରନରସିଂହପୁର ବାସିନ୍ଦା ପଣ୍ଡିତ ସଦାଶିବ ମିଶ୍ରଙ୍କର କୌଣସି ସନ୍ତାନ ସନ୍ତତି ନଥିବାରୁ ସେ ନିଜ ଛାତ୍ରମାନଙ୍କୁ ପୁଅ ପରି ବିଚାର କରୁଥିଲେ। ଗୋପବନ୍ଧୁଙ୍କ ସାହିତ୍ୟ ଜ୍ଞାନରେ ଅତ୍ୟନ୍ତ ପ୍ରୀତ ହୋଇ ପଣ୍ଡିତ ସଦାଶିବ ମାତୃହରା ଗୋପବନ୍ଧୁଙ୍କ ପ୍ରତି ପିତୃସ୍ନେହ ପ୍ରଦର୍ଶନ କରୁଥିଲେ। ବହୁ ସମୟରେ ଗୋପବନ୍ଧୁ ପଣ୍ଡିତ ସଦାଶିବଙ୍କ ଘରକୁ ଯାଇ ସାହିତ୍ୟ ଚର୍ଚ୍ଚା କରୁଥିଲେ। ଏହି ଆଲୋଚନାର ପ୍ରଭାବ ତାଙ୍କ ମନ ଉପରେ ପଡ଼ିଥିଲା। ପଣ୍ଡିତ ସଦାଶିବଙ୍କ ପ୍ରତି ଗୋପବନ୍ଧୁଙ୍କ ଭକ୍ତି ଓ ଗୋପବନ୍ଧୁଙ୍କ ପ୍ରତି ପଣ୍ଡିତ ମହାଶୟଙ୍କ ସ୍ନେହ ଏପରି ଥିଲା ଯେ ଗୋପବନ୍ଧୁ ମୟୂରଭଞ୍ଜରେ ସରକାରୀ ଓକିଲ ଥିବାବେଳେ ବାରିପଦାରେ ଗୋଟିଏ ଅନାଥାଶ୍ରମ ପ୍ରତିଷ୍ଠା କରିବା ଲାଗି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ପ୍ରବର୍ତ୍ତାଇ ଏହାର ପରିଚାଳନା ଦାୟିତ୍ୱ ଗ୍ରହଣ କରିବାକୁ ପଣ୍ଡିତ ସଦାଶିବଙ୍କୁ ନିମନ୍ତ୍ରଣ କରିଥିଲେ। ସେ ପଣ୍ଡିତଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ, "ମୁଁ ସିନା ଆପଣଙ୍କର ଗୋଟିଏ ପୁଅ କିନ୍ତୁ ଏହି ଅନାଥାଶ୍ରମରେ ଆପଣ ମୋ ପରି ଅନେକ ପୁତ୍ରକନ୍ୟାଙ୍କୁ ଲାଭ କରି ତାଙ୍କ ମେଳରେ ସୁଖୀ ଜୀବନ କଟାଇ ପାରିବେ। ତେଣୁ ଆପଣ ଏଠାକୁ ଆସନ୍ତୁ।" ଏହା ଥିଲା କର୍ତ୍ତବ୍ୟର ଆହ୍ୱାନ ଓ ପଣ୍ଡିତ ମହାଶୟ ଏହାର ପ୍ରତିରୋଧ କରିପାରିନଥିଲେ।

## ଉଚ୍ଚ ଇଂରାଜୀ ବିଦ୍ୟାଳୟ

ରୂପଦେଇପୁରରେ ଶିକ୍ଷା ସମାପ୍ତ କରି ଗୋପବନ୍ଧୁ 1893ରେ ପୁରୀ ଜିଲ୍ଲାସ୍କୁଲରେ ନାମ ଲେଖାଇଲେ। ସେତେବେଳେ ମଧ୍ୟଭର୍ଣ୍ଣାକୁଲର ସ୍କୁଲରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ପାଇଁ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇବା ସୁବିଧା ନ ଥିଲା। ଗୋପବନ୍ଧୁ ମଧ୍ୟଭର୍ଣ୍ଣାକୁଲର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଫଳରେ ଇଂରାଜୀ ଜାଣି ନ ଥିବାରୁ ମଧ୍ୟ ଇଂରାଜୀ ସ୍କୁଲରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ଯେଉଁ ଚତୁର୍ଥ (ବର୍ତ୍ତମାନ ଅଷ୍ଟମ)

ଶ୍ରେଣୀରେ ନାମ ଲେଖାଇ ପାରୁ ଥିଲେ, ତା ଠାରୁ ବର୍ଷକ ତଳେ ଥିବା ଶ୍ରେଣୀରେ ନାମ ଲେଖାଇଲେ। ଗୋପବନ୍ଧୁଙ୍କର ସାହିତ୍ୟରେ ବ୍ୟୁତ୍ପତ୍ତି ଥିଲା ଓ ସେ ଏଥିରେ ସମସ୍ତଙ୍କୁ ଟପି ଯାଇଥିଲେ। ତଥାପି ତାଙ୍କର ସ୍ୱଳ୍ପ ଇଂରାଜୀ ଜ୍ଞାନ ଯୋଗୁ ସେ ଧୀର ମନ୍ଥର ଗତିରେ ପାଠ ପଢ଼ି କ୍ରମେ ହୀନମନ୍ୟତା ଅନୁଭବ କଲେ। ଏହି ଧାରଣା ବେଶୀ ଦିନ ତିଷ୍ଠି ପାରି ନଥିଲା; ସେ କଠୋର ପରିଶ୍ରମ କରି ଇଂରାଜୀ ଶିଖିଲେ ଓ ଅନ୍ୟମାନଙ୍କ ସମାସ୍କନ୍ଦ ହେଲେ। ତାଙ୍କ ଚେଷ୍ଟା ଏପରି ଫଳବତୀ ହେଲା ଯେ ଏକାଥରକେ ଦୁଇଟା ଶ୍ରେଣୀକୁ ଅତିକ୍ରମ କରି ମଧ୍ୟଭର୍ଣ୍ଣାକୁଲର ପରୀକ୍ଷା ଯୋଗୁଁ ହରାଇଥିବା ଗୋଟିଏ ବର୍ଷର କ୍ଷତି ପୂରଣ କରି ପାରିଥିଲେ।

### ରାମଚନ୍ଦ୍ର ଦାଶଙ୍କ ସହିତ ସଂପର୍କ

ପୁରୀରେ ନାମ ଲେଖାଇବା ପରେ ଗୋପବନ୍ଧୁଙ୍କୁ ପୁରୀରେ ଅନ୍ୟ ଜଣେ ମୁକ୍ତାର ରାମଚନ୍ଦ୍ର ଦାଶଙ୍କ ସହିତ ପରିଚିତ କରାଇ ଦିଆଗଲା। ଦେଶ ଓ ଆର୍ତ୍ତମାନବର ସେବାପ୍ରତି ରାମଚନ୍ଦ୍ରଙ୍କ ଅନୁରକ୍ତି ବାଳକ ଗୋପବନ୍ଧୁଙ୍କୁ ପ୍ରଭାବିତ କରିଥିଲା। ଯେ କୌଣସି ଦୁର୍ଦ୍ଦଶାଗ୍ରସ୍ତ ଲୋକ ସହଜରେ ତାଙ୍କ ନିକଟକୁ ଯାଇ ପାରୁଥିଲା। ନିଷ୍ପେଷିତ ଲୋକମାନଙ୍କ ପ୍ରତି ତାଙ୍କର ସହାନୁଭୂତି ଥିଲା। ନିଷ୍ପେଷିତ ଲୋକମାନଙ୍କ ପ୍ରତି ତାଙ୍କର ସହାନୁଭୂତି ଥିଲା। ତେଣୁ ଜଣେ ଦୟାଳୁ କର୍ମୀ ଓ ସଂଗଠକ ରୂପେ ତାଙ୍କର ଜିଲ୍ଲା ତମାମ ଖ୍ୟାତି ଥିଲା। ରାମଚନ୍ଦ୍ରଙ୍କ ବ୍ୟକ୍ତିତ୍ୱ ଓ ସୁନାମ ଯୋଗୁଁ ତାଙ୍କ ସହକର୍ମୀ ଦୈତ୍ୟାରୀ ନିଜ ପୁଅ ଗୋପବନ୍ଧୁଙ୍କୁ ତାଙ୍କ ଦାୟିତ୍ୱରେ ଛାଡ଼ିଲେ। ରାମଚନ୍ଦ୍ର ଦଇତାପଡା ସାହିରେ ରହୁଥିଲେ। ସେତେବେଳେ ପରବର୍ତ୍ତୀ କାଳର ବିଖ୍ୟାତ ପଣ୍ଡିତ ବାସୁଦେବ ମିଶ୍ର ମଧ୍ୟ ଜଣେ ସଂସ୍କୃତ ଛାତ୍ରରୂପେ ରାମଚନ୍ଦ୍ରଙ୍କ ଅଭିଭାବକତ୍ୱରେ ଥିଲେ। ପ୍ରତ୍ୟହ କଚେରୀରୁ ଫେରି ରାମଚନ୍ଦ୍ର ଏ ଦୁହିଁଙ୍କ ସଙ୍ଗେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷା ପ୍ରଣାଳୀ ବିଷୟରେ ଆଲୋଚନା କରୁଥିଲେ ବୋଲି ଏ ଦୁହେଁ ପିଲାଦିନୁ ଶିକ୍ଷା ସମସ୍ୟା ପ୍ରତି ଆକୃଷ୍ଟ ହୋଇଥିଲେ। ସେହି ସମୟରେ ପୁରୀ ଜିଲ୍ଲା ସ୍କୁଲରେ ଦିବ୍ୟସିଂହ ମିଶ୍ର ନାମକ ଜଣେ ଶିକ୍ଷକ ଥିଲେ। ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ, ଧୀମତ୍ତା ଓ କୃତି ଦେଖି ସେ ମୁଗ୍ଧ ହୋଇ ଥିଲେ ବୋଲି ବେଳେ ବେଳେ ସେ ମଧ୍ୟ ରାମଚନ୍ଦ୍ରଙ୍କ ଆଲୋଚନାରେ ଯୋଗ ଦେଉଥିଲେ। ଏହିଭଳି ଶିକ୍ଷାଗତ ଓ ସାଂସ୍କୃତିକ ବାୟୁମଣ୍ଡଳରେ ରହିବା ଫଳରେ ଗୋପବନ୍ଧୁଙ୍କ ଅନ୍ତର୍ନିହିତ ଗୁଣମାନ ବିକାଶ ଲାଭ କରିଥିଲା ଓ ସେ ଭବିଷ୍ୟତ ଜୀବନରେ ସୁନାମ ଅର୍ଜନ କରିଥିଲେ।

### ପୁରୀ ଜୀବନ

ଛାତ୍ର ଜୀବନରେ ଗୋପବନ୍ଧୁ ବିଦ୍ୟାଳୟ ଓ ସାମାଜିକ କ୍ଷେତ୍ରରେ ଅଗ୍ରଗଣ୍ୟ ଥିଲେ। ସାମୂହିକ କାର୍ଯ୍ୟ ପ୍ରତି ମମତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେ ସଭା ଓ ସମିତି କରିବାକୁ ଭଲ ପାଉଥିଲେ। ଏହା ଦ୍ୱାରା ତାଙ୍କର ନେତୃତ୍ୱ ବିକଶିତ ହେଲା ଓ ସେ ମିଳିତ ଭାବରେ କାମ କରିବାକୁ ଶିଖିଲେ। ଦୁଇଗୋଟି ଘଟଣାରେ ପୁରୀ ଲୋକେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଓ ସ୍ୱାଧୀନତା ପ୍ରତି ତାଙ୍କ ଆକର୍ଷଣ ଦେଖି ମୁଗ୍ଧ ହୋଇଥିଲେ। ଗୋଟିଏ ଘଟଣା ସହରରେ ଓ ଅପରଟି ଜିଲ୍ଲା ସ୍କୁଲରେ ଘଟିଥିଲା।

ସେ ପୁରୀରେ ରହୁଥିବା ବେଳେ ଥରେ ଜଗନ୍ନାଥଙ୍କ ରଥଯାତ୍ରା ସମୟରେ ଭୀଷଣ ହଇଜା ହେଲା ଓ ସମାଗତ ଯାତ୍ରୀମାନଙ୍କ ମଧ୍ୟରୁ ଅନେକ ପ୍ରାଣ ହରାଇଲେ । ସରକାର ଓ ପୁରୀ ନଗରପାଳିକା କର୍ତ୍ତୃପକ୍ଷ ଏହି ମହାମାରୀ ପ୍ରତି ଉଦାସୀନ ରହିଲେ । ପୁରୀ ସହରର ରାସ୍ତାଘାଟରେ କୁଢ଼କୁଢ଼ ମଡା ଗଦା ହୋଇ ଚାରିଆଡ଼ ଦୁର୍ଗନ୍ଧ ହେଲା । ଏହି ମର୍ମନ୍ତୁଦ ଦୃଶ୍ୟରେ ବିଚଳିତ ହୋଇ ଗୋପବନ୍ଧୁ "ପୁରୀ ସେବା ସମିତି" ନାମରେ ଗୋଟିଏ ସ୍ୱେଚ୍ଛାସେବକ ଦଳ ଗଠନ କଲେ । ଶବ ଦାହ କରିବା ଓ ମୁମୂର୍ଷୁ ଲୋକମାନଙ୍କ ସେବା କରିବା ଏହି ଦଳର କାର୍ଯ୍ୟ ଥିଲା । ପରବର୍ତ୍ତୀ କାଳରେ ଭୂଦାନ ନେତା ଆଚାର୍ଯ୍ୟ ହରିହର ନାମରେ ଖ୍ୟାତିଲାଭ କରିଥିବା ହରିହର ଦାଶ ଏହି କାର୍ଯ୍ୟରେ ଗୋପବନ୍ଧୁଙ୍କ ଡାହାଣ ହାତ ଥିଲେ । ବହୁ ଜନମଙ୍ଗଳ କାର୍ଯ୍ୟରେ ଏକତ୍ର କାମ କରିବା ଯୋଗୁଁ ଏହି ଦୁଇଜଣଙ୍କ ମଧ୍ୟରେ ଏପରି ନିବିଡ଼ ବନ୍ଧୁତା ଜାତ ହେଲା ଯେ ଗୋପବନ୍ଧୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ ତାହା ଅତୁଟ ରହିଥିଲା । ସୀମିତ ପରିସର ମଧ୍ୟରେ ସେବାସମିତି ଏହି କାର୍ଯ୍ୟ କରୁଥିବା ବେଳେ ଦିବାକର ଦାଶ ନାମକ ଜଣେ ସାଂବାଦିକ ସ୍ଥାନୀୟ ସ୍ୱାସ୍ଥ୍ୟ ଓ ଜନସ୍ୱାସ୍ଥ୍ୟ କର୍ତ୍ତୃପକ୍ଷଙ୍କୁ ତୀବ୍ର ସମାଲୋଚନା କରି ଗୋଟିଏ ସଂବାଦ ପ୍ରକାଶ କଲେ । "ଷ୍ଟେଟ୍ସମ୍ୟାନ" ସଂବାଦପତ୍ରରେ ଏହି ସଂବାଦକୁ ପଢ଼ିବା ପରେ ସ୍ଥାନୀୟ ଅଫିସର ମାନଙ୍କ ଭିତରେ ଚହଳ ପଡ଼ିଗଲା ଓ ସିଭିଲ ସର୍ଜନ ଚାର୍ଲସ୍‌ବେକ ସଂବାଦଦାତାଙ୍କ ଉପରେ ରକ୍ତ ଚାଉଳ ଚୋବାଇଲେ । ଦିବାକର ଦାଶ ଏହି ସଂବାଦଦାତା ବୋଲି ଜାଣିବା ପରେ ବେକ୍ ସାହେବ ଥରେ ତାଙ୍କୁ ରାସ୍ତାରେ ଦେଖିବା ମାତ୍ରକେ ଟାଣି ଆଣି ପ୍ରହାର କଲେ । ଏହି ଅପ୍ରତ୍ୟାଶିତ ଆକ୍ରମଣରେ ପୁରୀର ଯୁବ ସଂପ୍ରଦାୟ ଏତେ ଆନ୍ଦୋଳିତ ହୋଇଗଲେ ଯେ ସିଭିଲ ସର୍ଜନଙ୍କ ପ୍ରାଣ ପ୍ରତି ଆଶଙ୍କା ଉପୁଜିଲା । କିନ୍ତୁ ଗୋପବନ୍ଧୁ ବନ୍ଧୁମାନଙ୍କ କ୍ରୋଧକୁ ଶାନ୍ତ କରି ସ୍ଥାନୀୟ ଦଣ୍ଡାଧିକାରୀଙ୍କ ଅଦାଲତରେ ସିଭିଲ ସର୍ଜନଙ୍କ ବିରୁଦ୍ଧରେ ଗୋଟିଏ ମୋକଦ୍ଦମା ଦାଏର କରିବାକୁ ଦିବାକରଙ୍କୁ ପରାମର୍ଶ ଦେଲେ । ଗୋରା ଜିଲ୍ଲା ମାଜିଷ୍ଟ୍ରେଟ୍ ସିଭିଲ ସର୍ଜନଙ୍କ ପ୍ରତି ସହାନୁଭୂତଶୀଳ ହୋଇ ତାଙ୍କୁ ରକ୍ଷା କରିବା ସ୍ୱାଭାବିକ ଥିଲା, କିନ୍ତୁ ସହରରେ ଏପରି କ୍ରୋଧ ସୃଷ୍ଟି ହୋଇଥିଲା ଯେ ଅଭିଯୋଗକୁ ଉପେକ୍ଷା କରିବା ଲାଗି ତାଙ୍କ ସାହସ ପାଇଲା ନାହିଁ । ସେ ଅନୁସନ୍ଧାନ କରିବା ପରେ ଜାଣିଲେ ଯେ ସିଭିଲ ସର୍ଜନ ପ୍ରକୃତରେ ଦୋଷୀ, ତେଣୁ ଯେ କୌଣସି ଉପାୟରେ କଥାଟିକୁ ମୀମାଂସା କରିଦେବାଲାଗି ସେ ତାଙ୍କୁ ପରାମର୍ଶ ଦେଲେ । ସିଭିଲ ସର୍ଜନଙ୍କୁ ଅଭିଯୁକ୍ତ କରି ଦଣ୍ଡ ଦିଆଇବା ଗୋପବନ୍ଧୁଙ୍କ ଉଦ୍ଦେଶ୍ୟ ନ ଥିଲା । ଭାରତୀୟ ମାନଙ୍କୁ ଘୃଣା ଚକ୍ଷୁରେ ଦେଖୁଥିବା ଏହି ଗୋରା ସାହେବ ମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଭାରତୀୟମାନଙ୍କ ମାନସମ୍ମାନ ଓ ମର୍ଯ୍ୟାଦା ପ୍ରତିପାଦନ କରିବାକୁ ସେ ଚାହୁଁଥିଲେ । ତେଣୁ ସେ ଜିଦ୍ କଲେ ଯେ ସିଭିଲ ସର୍ଜନ ସର୍ବସାଧାରଣ ସ୍ଥାନରେ ଦିବାକରଙ୍କୁ କ୍ଷମାପ୍ରାର୍ଥନା କରନ୍ତୁ । ତାହା ହିଁ ହେଲା ।

ଗୋପବନ୍ଧୁ ପ୍ରବେଶିକା ଶ୍ରେଣୀରେ ପଢୁଥିବା ବେଳେ ସାହିତ୍ୟ ଚର୍ଚ୍ଚାରେ ଆଗ୍ରହୀ ହୋଇ ସେ କାଳର ପତ୍ରପତ୍ରିକା ମାନଙ୍କରେ ଲେଖାଲେଖି କରୁଥିଲେ । ସେତେବେଳେ

ପୁରାତନ ଓ ଆଧୁନିକ କବିମାନଙ୍କ ମଧ୍ୟରେ ଇନ୍ଦ୍ରଧନୁ ଓ ବିଜୁଳି ନାମକ ଦୁଇଟି ପତ୍ରିକା ମାଧ୍ୟମରେ ତୀବ୍ର ଦ୍ୱନ୍ଦ ଚାଲିଥିଲା । ପୁରାତନ କବି, ବିଶେଷତଃ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଛାନ୍ଦ, ଅଳଙ୍କାର ଓ ଶବ୍ଦ ବିନ୍ୟାସ ଉପରେ ଗୁରୁତ୍ୱ ଦେଇ ଇନ୍ଦ୍ରଧନୁ ସେମାନଙ୍କୁ ସମର୍ଥନ କରୁଥିଲା । ତଦାନୀନ୍ତନ ବିଦ୍ୟାଳୟ ପରିଦର୍ଶକ କବିବର ରାଧାନାଥ ରାୟଙ୍କ ନେତୃତ୍ୱ ଗ୍ରହଣ କରିଥିବା ଆଧୁନିକ କବିମାନଙ୍କ ସମର୍ଥକ ଥିଲା-ବିଜୁଳି । ଗୋପବନ୍ଧୁ ଭାବୁଥିଲେ ଯେ ଗୋଟିଏ ଜାତି ଓ ତାର ସାହିତ୍ୟ ପରଂପରାକୁ ଧରି ବଞ୍ଚି ରହେ; କେବଳ ଦଳେ ସମସାମୟିକ ଲେଖକ କେତେଗୋଟି ନୂଆ ପରଂପରା ସୃଷ୍ଟି କରୁଛନ୍ତି ବୋଲି ପ୍ରାଚୀନ ପରଂପରାକୁ ନିନ୍ଦା କରିବା ବିଜ୍ଞତା ହେବ ନାହିଁ । ବର୍କଙ୍କ ପରି ସେ ବିଶ୍ୱାସ କରୁଥିଲେ ଯେ ଆଧୁନିକ ଜାତୀୟ ସଂଗଠନ ଅତୀତର ଐତିହ୍ୟ ଉପରେ ପ୍ରତିଷ୍ଠିତ ହେଲେ ସ୍ଥାୟୀ ହୋଇପାରେ । ଆଧୁନିକ ବାଦୀମାନଙ୍କ ପ୍ରତି ଗୋପବନ୍ଧୁଙ୍କର କୌଣସି ଅସୂୟା ନଥିଲା; ସେମାନଙ୍କର ଅତୀତକୁ ନିନ୍ଦା କରିବା ପ୍ରବୃତ୍ତିକୁ ସେ କେବଳ ପସନ୍ଦ କରୁ ନ ଥିଲେ । ଏହି ଧାରଣାର ବଶବର୍ତ୍ତୀ ହୋଇ ସେ ଇନ୍ଦ୍ରଧନୁରେ ଗୋଟିଏ ସମାଲୋଚନା ମୂଳକ କବିତା ପ୍ରକାଶ କଲେ । ଏହି କବିତାର ସାରମର୍ମ ଥିଲା; ସେ ଦିନେ ସ୍ୱପ୍ନ ଦେଖିଲେ ଯେ ଆଧୁନିକ କବିମାନଙ୍କ ଲେଖା ଗୋଟିଏ କୋଣରେ ଗଦା ହୋଇ ଉଇ ଖାଉଛି କିନ୍ତୁ ପ୍ରାଚୀନ କବିମାନଙ୍କ ଗ୍ରନ୍ଥାବଳୀ ସଯତ୍ନରେ ରଖା ହୋଇଛି । କବିବର ରାଧାନାଥ ଏହି କବିତାକୁ ବ୍ୟକ୍ତିଗତ ଅପମାନ ମନେକରି ଗୋପବନ୍ଧୁଙ୍କୁ ଦଣ୍ଡ ଦିଆଇଲେ । 1894 ସାଲ ଜାନୁଆରୀ 25 ତାରିଖରୁ ଫେବୃଆରୀ ଦୁଇ ତାରିଖ ପର୍ଯ୍ୟନ୍ତ ସପ୍ତାହେ କାଳ ସେ ପୁରୀ ଜିଲ୍ଲା ସ୍କୁଲକୁ ପରିଦର୍ଶନ କଲେ । ପୁରୀରେ ଏହି ସାତ ଦିନ ରହଣି ମଧ୍ୟରେ କିଏ ଏପରି ଉପହାସକର କବିତା ଲେଖିଛି ତାହାର ନାମ ଜାଣିବାକୁ ଅଦମ୍ୟ ଚେଷ୍ଟା ଚଳାଇଲେ । ଉତ୍କଳ ଦୀପିକା ସ୍ତମ୍ଭରେ ପ୍ରକାଶିତ ଗୋଟିଏ ସଂପାଦକଙ୍କ ପତ୍ରରୁ ଜଣାପଡ଼େ ଯେ ସେ - ଦିନ ସରକାରୀ ପଦ ବ୍ୟବହାର କରି ଉକ୍ତ ଲେଖକଙ୍କ ନାମ ବାହାର କରିବା ଲାଗି ପ୍ରଧାନ ଶିକ୍ଷକ ଓ ଅନ୍ୟ ଶିକ୍ଷକ ମାନଙ୍କ ଉପରେ ଚାପ ପକାଇଲେ ଓ ବାହାର କରି ନ ପାରିଲେ ସେମାନଙ୍କୁ ଦଣ୍ଡ ଦେବାକୁ ଧମକାଇଲେ । ସେ ପ୍ରତ୍ୟେକ ଶ୍ରେଣୀକୁ ଯାଇ କିଏ କିଏ ପତ୍ରପତ୍ରିକା ମାନଙ୍କରେ ଲେଖାଲେଖି କରନ୍ତି ବୋଲି ପଚାରିଲେ । ଶିକ୍ଷକ ଇନ୍‌ସ୍ପେକ୍ଟର ମହୋଦୟଙ୍କୁ ସନ୍ତୁଷ୍ଟ କରିବା ଲକ୍ଷ୍ୟରେ ଗୋପବନ୍ଧୁ ଉକ୍ତ କବିତାର ରଚୟିତା ବୋଲି ଜଣାଇ ଦେଲେ । ନିଜେ ରାଧାନାଥ ଗୋପବନ୍ଧୁଙ୍କୁ ଡ଼ାକି ପଚାରିବାରେ ସେ ଉକ୍ତ ଅଭିଯୋଗକୁ ଅସ୍ୱୀକାର କଲେ ସିନା, କେତେ ଜଣ ଶିକ୍ଷକ ଓ ଛାତ୍ରଙ୍କଠାରୁ ପ୍ରମାଣ ସଂଗ୍ରହ କରି ପ୍ରଧାନ ଶିକ୍ଷକ ଇନ୍‌ସ୍ପେକ୍ଟରଙ୍କୁ ଜଣାଇ ଦେଲେ ଯେ ଗୋପବନ୍ଧୁ ମିଛ କହିଛନ୍ତି । ସେ ହେଉଛନ୍ତି ସେହି କବିତାର ରଚୟିତା । ଫଳରେ ଗୋପବନ୍ଧୁ ସାତଦିନରେ ଯେତିକି ବୃତ୍ତି ପାଇଥାନ୍ତେ ସେତିକି ପରିମାଣରେ ଜୋରିମାନା ଦଣ୍ଡ ଦେବାକୁ ଓ ଗୋପବନ୍ଧୁଙ୍କୁ ସେ ବର୍ଷର ପୁରସ୍କାର ନ ଦେବାକୁ ସେ ପ୍ରଧାନ ଶିକ୍ଷକଙ୍କୁ ନିର୍ଦ୍ଦେଶ ଦେଲେ । ଗୋପବନ୍ଧୁ ପ୍ରକୃତରେ ସ୍ୱୀକାର

କରିବାକୁ ଚାହୁଁଥିଲେ, କିନ୍ତୁ ଇନ୍ଦ୍ରଧନୁର ଲେଖକ ଓ ପାଠକମାନଙ୍କ ପ୍ରତି ଇନ୍‌ସ୍ପେକ୍ଟରଙ୍କ ପ୍ରତିହିଂସା ମୂଳକ ମନୋବୃତ୍ତି ଓ ସେ ଦିନର କ୍ରୋଧ ଦେଖି ସତ କଥା ନ କହିବା ଲାଗି କେତେ ଜଣ ଶିକ୍ଷକ ତାଙ୍କୁ ପରାମର୍ଶ ଦେଲେ। ଇନ୍ଦ୍ରଧନୁରୁ କବିତାଟିକୁ ପ୍ରତ୍ୟାହାର କରି କ୍ଷମା ପ୍ରାର୍ଥନା କଲେ ଗୋପବନ୍ଧୁଙ୍କୁ ଦଣ୍ଡରୁ ମୁକ୍ତି ମିଳିବ ବୋଲି କୁହାଗଲା, କିନ୍ତୁ ଏଥିରେ ଗୋପବନ୍ଧୁ ରାଜି ହେଲେ ନାହିଁ କାରଣ ସେ ଭାବୁଥିଲେ ଯେ ପୁରାତନ କବିମାନଙ୍କୁ ସମର୍ଥନ କରି ଓ ନବୀନ କବିମାନଙ୍କ ତୁଳନାରେ ସେମାନଙ୍କ ଉତ୍କର୍ଷ ପ୍ରମାଣ କରି ସେ କୌଣସି ଅପରାଧ କରି ନାହାନ୍ତି।

# କଟକରେ କଲେଜ ଜୀବନ

ଗୋପବନ୍ଧୁ 1899ରେ ପୁରୀ ଜିଲା ସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏଫ୍. ଏ. ପଢ଼ିବା ଲାଗି ରେଭେନ୍‌ସା କଲେଜରେ ଭର୍ତ୍ତି ହେଲେ। ସେତେବେଳକୁ ତାଙ୍କ ବୟସ ତାଙ୍କ ବୟସ 23ବର୍ଷ। 1889 ସାଲରେ ଯେଉଁ ବାର ବର୍ଷ ବୟସ୍କା ଝିଅଟିକୁ ବିବାହ କରିଥିଲେ, ସେତେବେଳକୁ ତାର ପୁଆଣି ଘର ହୋଇ ସାରିଥିଲା, ତେଣୁ କଲେଜକୁ ଆସିବା ବେଳକୁ ସେ ପ୍ରକୃତରେ ବିବାହିତ। କଲେଜରେ ଯୋଗ ଦେବାର ଅବ୍ୟବହିତ ପୂର୍ବରୁ ତାଙ୍କ ବାପା ଦୈତ୍ୟାରୀ ଦାଶଙ୍କ ପରଲୋକ ହୋଇଗଲା। ତେଣୁ ନିଜ ପୈତୃକ ସଂପତ୍ତି ଓ ପରିବାରକୁ ଭାଇନା ନାରାୟଣ ଦାଶଙ୍କୁ ସମର୍ପି ସେ କଲେଜରେ ଯୋଗ ଦେଲେ ଏବଂ ନିଜ କର୍ତ୍ତବ୍ୟରେ ଆଗେଇ ଯିବା ଲାଗି ଭାଇନା ଗୋପବନ୍ଧୁଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ।

ଗୋପବନ୍ଧୁ କଟକକୁ ନୂଆ ହୋଇ ଆସିଥିବାରୁ ନୂତନ ପରିସ୍ଥିତିରେ ଲାଜକୁଳା ହେଲେ। ତାଙ୍କ ବ୍ୟକ୍ତିତ୍ୱରେ ଏପରି ଆକର୍ଷଣ ଥିଲା ଯେ ବନ୍ଧୁ ଓ ସହକର୍ମୀମାନେ ତାଙ୍କ ଆଡ଼କୁ ଟାଣି ହୋଇ ଆସୁଥିଲେ। ସେ କଟକରେ ପଢ଼ା ଆରମ୍ଭ କରିବା ମାତ୍ରକେ କେତେ ଜଣ ବନ୍ଧୁଙ୍କୁ ନେଇ "କର୍ତ୍ତବ୍ୟ ବୋଧିନୀ ସମିତି" ଗଠନ କଲେ। ଏହି ସମିତିର ଅଧିବେଶନରେ ନାନାବିଧ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସମସ୍ୟା ଆଲୋଚିତ ହୁଏ ଓ ସଭ୍ୟମାନେ ନିଜ ନିଜର ନିର୍ଭୀକ ମତ ପ୍ରକାଶ କରନ୍ତି। ବେଳେ ବେଳେ ଛାତ୍ରମାନଙ୍କୁ ଉତ୍ସାହିତ କରିବା ଲାଗି କେତେଜଣ ଅଧ୍ୟାପକ ମଧ୍ୟ ଏହି ଆଲୋଚନାରେ ଭାଗ ନେଉ ଥିଲେ। ସେତେବେଳେ ଓଡ଼ିଆ ଭାଷାକୁ ହଟାଇ ଓଡ଼ିଆ ଲୋକଙ୍କ ମଧ୍ୟରେ ବଙ୍ଗଳାଭାଷା ପ୍ରବର୍ତ୍ତନ କରିବା ଲାଗି ଓଡ଼ିଶାରେ ଥିବା ମୁଷ୍ଟିମେୟ ବଙ୍ଗାଳୀ ଗୋଟିଏ ଆନ୍ଦୋଳନ ଆରମ୍ଭ କଲେ। ସେତେବେଳେ ରେଭେନ୍‌ସା କଲେଜ କଲିକତା ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ ଥିଲା; ତଥାପି ଅନୁବାଦ କରିବା ଲାଗି ଓଡ଼ିଶାର ଛାତ୍ରମାନଙ୍କୁ ଓଡ଼ିଆ ଅନୁଚ୍ଛେଦ ଦିଆଯାଉ ନ ଥିଲା। ସେମାନେ ବଙ୍ଗଳା ଅନୁଚ୍ଛେଦକୁ ଇଂରାଜୀରେ ଅନୁବାଦ କରୁଥିଲେ। ଏହା ଥିଲା, ଓଡ଼ିଆମାନଙ୍କ ପ୍ରତି ଅପମାନ। ଉକ୍ତ ସମିତିର ଆନ୍ଦୋଳନ ଫଳରେ ଓଡ଼ିଆ ଛାତ୍ରମାନଙ୍କ ପାଇଁ ଓଡ଼ିଆ ଅନୁଚ୍ଛେଦ ଦେବା ଲାଗି ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ବାଧ୍ୟ ହୋଇଥିଲେ। ଏହି କାର୍ଯ୍ୟରେ ହରିହର ଦାଶ ଓ ବ୍ରଜସୁନ୍ଦର ଦାସ ଗୋପବନ୍ଧୁଙ୍କୁ ସାହାଯ୍ୟ କରିଥିଲେ। ଏହି ତିନି ଜଣ ବନ୍ଧୁ ଏକତ୍ର ହୋଇ ବନ୍ୟା ଦୁର୍ଗତ ଲୋକଙ୍କ ସାହାଯ୍ୟାର୍ଥେ ଗୋଟିଏ

ସ୍ୱେଚ୍ଛାସେବକ ବାହିନୀ ଗଠନ କଲେ। ସେମାନେ ସହରରେ ବୁଲି ଚାନ୍ଦା ଆଦାୟ କଲେ ଏବଂ ସଂଗୃହୀତ ଚାନ୍ଦାରେ ବନ୍ୟାକ୍ଲିଷ୍ଟ ଲୋକଙ୍କୁ ସାହାଯ୍ୟ କରିବା ଲାଗି ସ୍ୱେଚ୍ଛାସେବକମାନଙ୍କୁ ପଠାଇଲେ।

1901ରେ ଏଫ୍. ଏ. ପାସ କରିବା ପରେ ଗୋପବନ୍ଧୁ ପାଠପଢ଼ା ଛାଡ଼ି ଦେବାକୁ ନିଷ୍ପତ୍ତି କଲେ। ସେ କଲେଜରେ ଥିବାବେଳେ ତାଙ୍କର ଗୋଟିଏ ନବଜାତ ଶିଶୁର ମୃତ୍ୟୁ ସଂବାଦ ପାଇଲେ। ସେ ଜନ୍ମ ହେବା ବେଳେ ମାତାଙ୍କୁ ହରାଇ ଥିଲେ ଏବଂ କଲେଜରେ ଯୋଗ ଦେବା ଆଗରୁ ପିତାଙ୍କର ମୃତ୍ୟୁ ହୋଇଥିଲା। ଏହି ମୃତ୍ୟୁ ଜନିତ ଶୋକ ଓ ଦେଶବାସୀଙ୍କ ଦୁଃଖ ଦେଖି ପାଠପଢ଼ା ଛାଡ଼ି ଜନ ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଲାଗି ମନ ବଳାଇଲେ କିନ୍ତୁ କେତେ ଜଣ ବନ୍ଧୁ ଓ ଭାଇନା ନାରାୟଣଙ୍କ ଅନୁରୋଧ କ୍ରମେ ସେ କଲେଜକୁ ଫେରିଯାଇ ବି. ଏ. ଶ୍ରେଣୀରେ ନାମ ଲେଖାଇଲେ ସିନା, ଅଧ୍ୟୟନରେ ମନୋଯୋଗୀ ହୋଇ ପାରିଲେ ନାହିଁ। ଫଳରେ 1903 ରେ ସେ ବି. ଏ. ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ। ପରୀକ୍ଷାରେ ଅକୃତକାର୍ଯ୍ୟ ହେବା ସଂବାଦ ତାଙ୍କୁ ଖୁବ୍ ବାଧିଲା, କାରଣ ସେତିକି ବେଳେ ନିଜର ଏକମାତ୍ର ପୁତ୍ରର ମୃତ୍ୟୁ ସଂବାଦ ପାଇଥିଲେ; ତଥାପି ଏହି ଦୁର୍ଯୋଗ ଯୋଗୁଁ ଭାଙ୍ଗି ନ ପଡ଼ି ସେ 1904ରେ ପୁଣି ଥରେ ବି. ଏ. ପରୀକ୍ଷା ଦେଇ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହେଲେ। ଗୋଟିଏ ସ୍ୱାଧୀନ ବ୍ୟବସାୟ ଗ୍ରହଣ କରିବା ଲାଗି ନିଜକୁ ଯୋଗ୍ୟ କରିବା ଉଦ୍ଦେଶ୍ୟରେ ସେ ଏମ୍. ଏ. ଓ ଆଇନ ଶ୍ରେଣୀରେ ଯୋଗ ଦେଲେ।

# କଲିକତାରେ ଛାତ୍ର ଜୀବନ

ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଦିନେ ଗୋପବନ୍ଧୁ ଏବଂ ତାଙ୍କର ଦୁଇବନ୍ଧୁ, ଗୋପୀନାଥ ଦାଶ ଓ ବୈଦ୍ୟନାଥ ମିଶ୍ର ଏକାଠି ଯାଇ ଗୋପବନ୍ଧୁଙ୍କ ଗୁରୁ ମୁକ୍ତାର ରାମଚନ୍ଦ୍ର ଦାଶଙ୍କୁ ପୁରୀ ଦଇତାପଡ଼ା ସାହିରେ ଥିବା ତାଙ୍କ ବାସ ଭବନରେ ଭେଟି ଭବିଷ୍ୟତ କର୍ମପନ୍ଥା ବିଷୟରେ ପରାମର୍ଶ ଭିକ୍ଷା କଲେ। ପରାମର୍ଶ ଦେବା ପରିବର୍ତ୍ତେ ସେ ଏହି ତିନି ଜଣଙ୍କୁ ପଚାରିଲେ, "ତୁମ ଜୀବନର ଲକ୍ଷ୍ୟ କ'ଣ?" ଗୋପୀନାଥ ଓ ବୈଦ୍ୟନାଥ ସମ ସ୍ୱରରେ ଉତ୍ତର ଦେଲେ, "ସରକାରୀ ଚାକିରୀ", କିନ୍ତୁ ଗୋପବନ୍ଧୁ ଆଖି ଛଳଛଳ କରି କହିଲେ, "ସମାଜ ସେବା ଓ ସ୍ୱାଧୀନ ଜୀବନ"। ପରେ ଗୋପୀନାଥ ଓ ବୈଦ୍ୟନାଥ ଡେପୁଟି ମାଜିଷ୍ଟ୍ରେଟ୍ ହୋଇ ଅନୁବିଭାଗ ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ପଦକୁ ଉଠି ପାରିଥିଲେ ଏବଂ ଗୋପବନ୍ଧୁ ସ୍ୱାଧୀନ ଜୀବନ ଅନ୍ୱେଷଣରେ ପ୍ରଥମେ କଟକ ଓ ପରେ କଲିକତାରେ ଆଇନ ପଢ଼ିଲେ।

ଜୀବନରେ ବିପୁଳ ଅର୍ଥୋପାର୍ଜନ କରିବା ଲକ୍ଷ୍ୟରେ ଗୋପବନ୍ଧୁ ପାଠ ପଢ଼ି ନ ଥିଲେ, ବରଂ ନିଜ ଅଭିଳଷିତ ସମାଜସେବା କାର୍ଯ୍ୟ ପାଇଁ ସେ ଛାତ୍ର ଜୀବନରୁ ନିଜକୁ ପ୍ରସ୍ତୁତ କରିଥିଲେ। ଏଥିପାଇଁ ସେ କଲିକତାରେ ଥିବା ବେଳେ କେବଳ ବହି ପଢ଼ିବାରେ ନିଜକୁ ଆବଦ୍ଧ କରି ରଖି ପାରି ନ ଥିଲେ। କଲିକତାରେ କୁଲି ଓ ପୂଝାରୀ କାମ କରୁଥିବା ଓଡ଼ିଆମାନଙ୍କ ଜୀବନ ଓ କାର୍ଯ୍ୟକ୍ରମ ସହିତ ନିଜକୁ ପରିଚିତ କରାଇବା ଲାଗି ସେ ଅଭ୍ୟାସ କରି କଲିକତାର ଗଳି ଓ କନ୍ଦିରେ ବୁଲୁଥିଲେ। ଓଡ଼ିଆମାନେ ଏପରି ନୀଚ କାମ କରୁଥିବାରୁ ବଙ୍ଗାଳୀମାନେ ସେମାନଙ୍କୁ ଘୃଣା ଚକ୍ଷୁରେ ଦେଖୁଥିଲେ। ଗୋପବନ୍ଧୁ ବିଚାରିଲେ ଯେ ସେମାନଙ୍କୁ ଏକତାବଦ୍ଧ କରି ନ ପାରିଲେ କଲିକତା ନଗରୀରେ ସେମାନଙ୍କ ଅବସ୍ଥାକୁ ଉନ୍ନତ କରି ହେବନାହିଁ। "ଏକତା ହିଁ ବଳ" ନୀତିକୁ ସେ ଛାତ୍ର ଜୀବନରୁ ଗ୍ରହଣ କରି ନେଇ ଥିଲେ। ତେଣୁ ସେ ଓଡ଼ିଆମାନଙ୍କ ମଧ୍ୟରେ ସଂଘ ଓ ସମିତି ଗଢ଼ି ସେମାନଙ୍କୁ ଶିକ୍ଷା ଦେବା ଲକ୍ଷ୍ୟରେ ନୈଶ ବିଦ୍ୟାଳୟମାନ ସ୍ଥାପନ କଲେ। ଏହି ନୈଶ ବିଦ୍ୟାଳୟ ଗୁଡ଼ିକ ମଧ୍ୟରୁ ଗୋଟିଏ ଏ ପର୍ଯ୍ୟନ୍ତ "ଗୋପବନ୍ଧୁ ନୈଶ ବିଦ୍ୟାଳୟ" ନାମରେ ରହି କଲିକତାବାସୀ ଓଡ଼ିଆମାନଙ୍କ ଗୋଷ୍ଠୀ ଜୀବନର ପ୍ରଧାନ କେନ୍ଦ୍ର ରୂପେ କାର୍ଯ୍ୟ କରୁଛି। ଓଡ଼ିଶାର ଆହ୍ୱାନ ତାଙ୍କ କାନକୁ ସବୁବେଳେ ଶୁଣା ଯାଉଥିଲା। ଓଡ଼ିଶା ଠାରୁ ଦୂରରେ ଥିଲେ ବି ସେ ନିଜ ଜନ୍ମଭୂମିର ସମସ୍ୟା ଭୁଲି ପାରୁ ନ ଥିଲେ।

ସେ ତିନି ଶହ ମାଇଲ ଦୂରରେ ଥିଲେ ହେଁ ବନ୍ୟା ସଂବାଦ ପାଇବା ମାତ୍ରକେ ନିଜ ବନ୍ଧୁ ଓ ସହକର୍ମୀ ମାନଙ୍କୁ ନେଇ ବିପନ୍ନଙ୍କ ସାହାଯ୍ୟ ଲାଗି ଚାନ୍ଦା ସଂଗ୍ରହରେ ଲାଗି ଯାଉଥିଲେ। ଏହି ଜନମଙ୍ଗଳ କାର୍ଯ୍ୟ କରିବା ସଂଗେ ସଂଗେ ସେ କଲିକତାରେ ଅଧ୍ୟୟନରତ ଯୁବକମାନଙ୍କ ଉପରେ ଦୃଷ୍ଟି ରଖିଥିଲେ। ପୁନାର "ଦାକ୍ଷିଣାତ୍ୟ ଶିକ୍ଷା ସମିତି" ଆଦର୍ଶରେ ଗୋଟିଏ ଶିକ୍ଷା ପ୍ରସାର ସମିତି ଗଢ଼ିବା ଲାଗି ମନସ୍ଥ କରି ସେ ଆଗ୍ରହୀ ବନ୍ଧୁମାନଙ୍କ ସହିତ ଏହି ସମସ୍ୟା ସଂପର୍କରେ ଆଲୋଚନା ଆରମ୍ଭ କରିଥିଲେ।

## ସଂତ୍ରାସବାଦ ସହିତ ପରିଚୟ

କଲିକତା ବିଶ୍ୱବିଦ୍ୟାଳୟର ଛାତ୍ର ଥିବା ବେଳେ ଗୋପବନ୍ଧୁ 1905 ମସିହା ଗ୍ରୀଷ୍ମାବକାଶରେ ଭୁବନେଶ୍ୱର ଆସି ନିଜ ବାଲ୍ୟବନ୍ଧୁ ବାସୁଦେବ ରଥଙ୍କ ପାଖରେ ରହୁଥିଲେ। ବାସୁଦେବ ଓ ଗୋପବନ୍ଧୁ ଉଭୟ ପୁରୀର ମୁକ୍ତାର ରାମଚନ୍ଦ୍ର ଦାଶଙ୍କ ଅଭିଭାବକତ୍ୱରେ ରହୁଥିଲେ। ଦୁହେଁ ଭୁବନେଶ୍ୱରରେ ଏକାଠି ରହୁଛନ୍ତି ଶୁଣି ରାମଚନ୍ଦ୍ର ସେଠାକୁ ଆସି କେତେ ଦିନ କଟାଇବା ଲୋଭ ସମ୍ବରଣ କରି ପାରିଲେ ନାହିଁ। ଗୁରୁଦେବଙ୍କ ସହିତ ଶିଷ୍ୟମାନେ ଏହି ଶେଷ ଥର ପାଇଁ ଏକତ୍ର ରହିଥିଲେ, କାରଣ ଅଳ୍ପ ଦିନ ପରେ ରାମଚନ୍ଦ୍ର ପରଲୋକ ଗମନ କରିବାରୁ ଗୋପବନ୍ଧୁଙ୍କ ହୃଦୟରେ ପୁଣି ଏକ ଶୂନ୍ୟସ୍ଥାନ ସୃଷ୍ଟି ହେଲା। ଭୁବନେଶ୍ୱରରେ ଅବସ୍ଥାନ କାଳରେ ଗୁରୁ ଓ ଶିଷ୍ୟଦ୍ୱୟ କେତେ ଜଣ ଛାତ୍ରଙ୍କୁ ସାଙ୍ଗରେ ନେଇ ସହର ଆଖପାଖରେ ଐତିହାସିକ କୀର୍ତ୍ତିସ୍ତମ୍ଭମାନ ପରିଭ୍ରମଣ କରି ସେମାନଙ୍କ ହୃଦୟରେ ଓଡ଼ିଶା ଓ ତାହାର ଗୌରବରାଜି ସମ୍ବନ୍ଧରେ ଅନୁରକ୍ତି ସୃଷ୍ଟି କରୁଥିଲେ। ସେତିକିବେଳେ ଗୋପବନ୍ଧୁ ବଙ୍ଗଳାର ଜଣେ ସଂତ୍ରାସବାଦୀ ଶଶୀଭୂଷଣ ରାୟ ଚୌଧୁରୀଙ୍କ ସଂସ୍ପର୍ଶରେ ଆସିଲେ। ରାୟ ଚୌଧୁରୀ ଭୁବନେଶ୍ୱରରେ ଜଣେ ଗୃହ ଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ। ଏ ତାଙ୍କର ଜୀବିକା ନଥିଲା, ଏହି ଆଳରେ ସେ ଓଡ଼ିଶାରୁ କେତେ ଜଣ ସଂତ୍ରାସବାଦୀ ଶିକ୍ଷାନବିଶ ସଂଗ୍ରହ କରିବା ଉଦ୍ୟମରେ ଥିଲେ। ଭୁବନେଶ୍ୱର ରହଣି ବେଳେ ସେ ଯୁବକମାନଙ୍କୁ ବ୍ୟାୟାମ ଏବଂ ଲାଠି ଓ ଖଣ୍ଡା ବ୍ୟବହାର ଶିଖାଇବା ଲାଗି ଗୋଟିଏ କେନ୍ଦ୍ର ପ୍ରତିଷ୍ଠା କରିଥିଲେ। ମେଦିନୀପୁରର ମହାନ ବିପ୍ଳବୀ ଖୁଦିରାମଙ୍କ ସହକର୍ମୀ ଭାବରେ ସେ ଓଡ଼ିଶାର ଯୁବକମାନଙ୍କ ହୃଦୟରେ ବିପ୍ଳବର ବୀଜ ବୁଣିବାକୁ ଚାହୁଁଥିଲେ। ଏହି ସମୟରେ ତାଙ୍କର ଗୋପବନ୍ଧୁ ଓ ରାମଚନ୍ଦ୍ରଙ୍କ ସହିତ ସୌହାର୍ଦ୍ଦ୍ୟ ହେଲା। ସେମାନଙ୍କୁ ସୁନ୍ଦର ପଦାର ପଣ୍ଡିତ ସୁଦର୍ଶନ ନନ୍ଦ ଓ ପଣ୍ଡିତ ବାସୁଦେବ ରଥ ସାହାଯ୍ୟ କରିଥିଲେ। ସେମାନଙ୍କ ସମବେତ ଉଦ୍ୟମରେ "ଏକାମ୍ର ଏକାଡ଼େମୀ" ନାମକ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହେଲା। ଏହାକୁ ଗୋଟିଏ ଜାତୀୟ ବିଦ୍ୟାଳୟ ଛାଞ୍ଚରେ ଗଢ଼ା ଯାଇଥିଲା। କିନ୍ତୁ କେତେ ବର୍ଷ ପରେ ଅର୍ଥାଭାବ ହେତୁ ସ୍କୁଲଟି ବନ୍ଦ ହୋଇଯାଇଥିଲା।

ପରେ ଗୋପବନ୍ଧୁ ଉପଲବ୍ଧି କଲେ ଯେ ବଙ୍ଗଳାର 'ବନ୍ଦେ ମାତରଂ' ଗୋଷ୍ଠୀ ପରି ଓଡ଼ିଶାର ଦଳେ ଯୁବକ ରାମକୃଷ୍ଣ ମିଶନର ସଦସ୍ୟମାନଙ୍କ ଢାଞ୍ଚାରେ ଗେରୁଆ

ପୋଷାକ ପରିଧାନ କରି ମଫସଲ ଅଞ୍ଚଳରେ ବୁଲି ସ୍ୱଦେଶୀ ଓ ବିପ୍ଳବର ବାର୍ତ୍ତା ପ୍ରସାର କରିବା ଆବଶ୍ୟକ। ସେମାନେ ସମାଜ ସଂସ୍କାରକ ବାହାନାରେ ଶିକ୍ଷା ପ୍ରସାର ଏବଂ ଶରୀର ଚର୍ଯ୍ୟା ସମେତ ସମାଜ ସେବା ଓ ଅବସର ବିନୋଦନ କାର୍ଯ୍ୟ ବିକଶିତ କରାଇବେ। ଆଚାର୍ଯ୍ୟ ହରିହର ଦାଶ, ପଣ୍ଡିତ ନୀଳକଣ୍ଠ ଦାଶ, ଜଗନ୍ନାଥ ମହାପାତ୍ର, ଅନନ୍ତ ମିଶ୍ର ଆଦି କିଛି ସମୟ ପାଇଁ ଏହି ପରିବ୍ରାଜକ ଗୋଷ୍ଠୀରେ ଥିଲେ; ଏପରିକି ଗୋପବନ୍ଧୁଙ୍କ କଲେଜ ସାଥୀ ବ୍ରଜସୁନ୍ଦର ଦାସ ମଧ୍ୟ ଏଥିପ୍ରତି ଆକୃଷ୍ଟ ହୋଇଥିଲେ। 1905ରେ ଲର୍ଡ଼ କର୍ଜନ ବଙ୍ଗଭଙ୍ଗ କରିବା ଫଳରେ ବଙ୍ଗଳାରେ ସ୍ୱଦେଶୀ ଆନ୍ଦୋଳନ ଚାଲିଥିବା ବେଳେ ଗୋପବନ୍ଧୁ କଲିକତାରେ ରହିଥିବାରୁ ସେ ବଙ୍ଗୀୟ ଯୁବଶକ୍ତିର ଦେଶପ୍ରୀତି ଓ ବିପ୍ଳବାତ୍ମକ କାର୍ଯ୍ୟାବଳି ସହିତ ପରିଚିତ ହୋଇଥିଲେ। ତାଙ୍କର ସମାଜସେବା ପ୍ରବୃତ୍ତି ସହିତ ଜାତୀୟ ସ୍ୱାଧୀନତା ପାଇଁ ଉତ୍କଣ୍ଠା ଜାଗ୍ରତ ହେଲା ଏବଂ ମହାତ୍ମା ଗାନ୍ଧିଙ୍କ ଅଭ୍ୟୁଦୟର ପ୍ରାୟ ପନ୍ଦର ବର୍ଷ ପୂର୍ବରୁ ସେ ଉପଲବ୍ଧି କରି ପ୍ରଚାର ଚଳାଇଲେ ଯେ ଲୋକଙ୍କୁ ଜାତୀୟତାରେ ଉଦ୍‌ବୁଦ୍ଧ କରିବାକୁ ହେଲେ ସମାଜସେବାକୁ ମାଧ୍ୟମ ରୂପେ ଗ୍ରହଣ କରିବାକୁ ହେବ ଓ ଗ୍ରାମ ସଂଗଠନ ଦ୍ୱାରା ଜନସାଧାରଣଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିବାକୁ ପଡ଼ିବ।

1906ରେ ଗୋପବନ୍ଧୁ ଆଇନରେ ଉପାଧି ପାଇଲେ। ବି. ଏଲ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସଂବାଦ ପାଇବା ସହିତ ତାଙ୍କ ଜୀବନରେ ଗୋଟିଏ ଅଧ୍ୟାୟର ପରିସମାପ୍ତି ହେଲା; କାରଣ ଏହି ସଂବାଦ ପାଇବା ସଂଗେ ସଂଗେ ସେ ନିଜ ପତ୍ନୀଙ୍କ ମୃତ୍ୟୁ ସଂବାଦ ମଧ୍ୟ ପାଇଲେ। ସେ ସ୍ୱାଧୀନ ଜୀବନ ଯାପନ କରିବେ ବୋଲି ରାମଚନ୍ଦ୍ର ଦାଶଙ୍କୁ ଜଣାଇଥିଲେ କିନ୍ତୁ ସେ ଜଣେ ଓକିଲ ହେବା ବେଳକୁ ଦାଶେ ଜୀବିତ ନ ଥିଲେ। ପାରିବାରିକ ଜଞ୍ଜାଳ ପରି ଆଉ କୌଣସି ବିଷୟ ସ୍ୱାଧୀନ ଜୀବନ ପାଇଁ ବେଶୀ ବାଧା ସୃଷ୍ଟି କରିପାରେ ନାହିଁ। ସେ ସ୍ୱାଧୀନ ଜୀବନ ଆରମ୍ଭ କରିବା ବେଳକୁ ତାଙ୍କର ଏକମାତ୍ର ସାଂସାରିକ ବନ୍ଧନ ଛିନ୍ନ ହୋଇଯିବା ବିଧି ନିର୍ଦ୍ଦେଶ ପରି ପ୍ରତୀତ ହେଲା।

ପତ୍ନୀ ବିୟୋଗ ବେଳକୁ ଗୋପବନ୍ଧୁଙ୍କ ବୟସ ମାତ୍ର 28 ବର୍ଷ। ବାରବର୍ଷର ବିବାହିତ ଜୀବନ ମଧ୍ୟରେ ତାଙ୍କର ଦୁଇଟି କନ୍ୟା ଓ ତିନି ଗୋଟି ପୁତ୍ର ସନ୍ତାନ ହୋଇଥିଲା। କିନ୍ତୁ ପତ୍ନୀ ବିୟୋଗ ବେଳେ ପୁତ୍ରମାନେ ଜୀବିତ ନ ଥିଲେ, କେବଳ ସାରଙ୍ଗିଣୀ ଓ କେତକୀ ନାମ୍ନୀ ଦୁଇଟି କନ୍ୟା ଥିଲେ । ସେମାନେ ପରେ ବିବାହ କରିଥିଲେ।

ଅଠେଇଶ ବର୍ଷ ବୟସ୍କ ଜଣେ ମୃତଦାର ଯୁବକ ପୁଣି ଥରେ ବିବାହ କରି ପାରିଥାନ୍ତେ; ବସ୍ତୁତଃ ତାଙ୍କ ଭାଇନା ନାରାୟଣ ଓ କେତେଜଣ ଅନ୍ତରଙ୍ଗ ବନ୍ଧୁ ନିଜ ଶିଶୁକନ୍ୟା ଦୁହିଁଙ୍କ ମଙ୍ଗଳ ପାଇଁ ପୁନର୍ବିବାହ କରିବା ଲାଗି ତାଙ୍କୁ ସନିର୍ବନ୍ଧ ଅନୁରୋଧ କରିଥିଲେ। କିନ୍ତୁ କେହି ଗେପବନ୍ଧୁଙ୍କୁ ପ୍ରବର୍ତ୍ତାଇ ପାରିଲେ ନାହିଁ। ଭାଇନା ନାରାୟଣଙ୍କ ତରଫରୁ ଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଓ ଭକ୍ତକବି ମଧୁସୂଦନ ରାଓଙ୍କର ଜଣେ ପୁତୁରା ରଘୁନାଥ ରାଓ ଗୋପବନ୍ଧୁଙ୍କୁ ଗୋଟିଏ ପ୍ରସ୍ତାବ ଦେଲେ। ପୁନର୍ବିବାହ

ପ୍ରସ୍ତାବ ଆଲୋଚନା ବେଳେ ଗୋପବନ୍ଧୁ ନୀରବ ଓ ଗମ୍ଭୀର ହୋଇ ଗଲେ। ରଘୁନାଥଙ୍କ ପ୍ରସ୍ତାବ ଶୁଣି ଗୋପବନ୍ଧୁ ପଚାରିଲେ, ରଘୁ, ମୁଁ ଆଗରୁ ମରି ଯାଇଥିଲେ ମୋ ସ୍ତ୍ରୀ ଆଉ ଥରେ ବିଭା ହେଉ ବୋଲି ତୁ ପ୍ରସ୍ତାବ କରି ପାରି ଥାନ୍ତୁ କି? ରଘୁନାଥ ଉତ୍ତର ଦେଲେ, ''ଏହା କ'ଣ କେବେ ସମ୍ଭବପର ?'' ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସେତେବଳେ ବିଧବା ବିବାହ ପ୍ରଥା ଚଳି ନ ଥିଲା। ଗୋପବନ୍ଧୁ ଦୃଢ଼ସଂକଳ୍ପ ସ୍ୱରରେ କହିଲେ,'' ମୋ ସ୍ତ୍ରୀ ଯଦି ପୁନର୍ବିବାହ କରି ପାରି ନ ଥାନ୍ତା, ମୁଁ କିପରି ପୁନର୍ବିବାହ କରିବି ବୋଲି ପରାମର୍ଶ ଦେଉଛୁ?''

ଗୋପବନ୍ଧୁ ଜଣେ ପାର୍ଥିବ ମାନବ ନ ଥିଲେ, ତାଙ୍କଠାରେ ଅତି-ମାନବିକତା ଥିଲା ଓ ସେ ସଂସାରିକ ଜୀବନ ପ୍ରତି ଗୁରୁତ୍ୱ ଆରୋପ କରୁ ନ ଥିଲେ। 1904ରେ ତାଙ୍କର ଏକମାତ୍ର ପୁତ୍ରର ମୃତ୍ୟୁ ସମୟରେ ଏହାର ପ୍ରମାଣ ମିଳିଥିଲା। ପୁରୀ ଦଇତାପଡ଼ା ସାହିରେ ଥିବା ଗୋଟିଏ କ୍ଷୁଦ୍ର ଗୃହରେ ତାଙ୍କ ପୁଅ ସାଂଘାତିକ ଭାବରେ ବେମାର ହୋଇ ଶୋଇଥିଲା। ବନ୍ଧୁ ଓ ପରିଜନମାନେ ଦୁଃଖାଭିଭୂତ ଗୋପବନ୍ଧୁଙ୍କୁ ସହାନୁଭୂତି ପ୍ରଦର୍ଶନ କରିବା ଲାଗି ବହୁସଂଖ୍ୟାରେ ଆସୁଥିଲେ। ରଘୁନାଥ ଓ ଅନ୍ୟ କେତେଜଣ ବନ୍ଧୁ ପାଖରେ ବସିଥିଲେ। ସେତିକି ବେଳେ ଖବର ଆସିଲା ଯେ ତୋଭାର ଅଞ୍ଚଳରେ ପ୍ରଳୟଙ୍କରୀ ବନ୍ୟା ହୋଇ କ୍ଳିଷ୍ଟ ଜନତା ଚାଳ ଓ ଗଛ ପରେ ଅନାହାରରେ ବସି ରହିଛନ୍ତି। ତତ୍‌କ୍ଷଣାତ୍ ସାହାଯ୍ୟ ନ ପାଇଲେ ବହୁ ସଂଖ୍ୟକ ଲୋକ ପ୍ରାଣ ହରାଇ ପାରନ୍ତି। ଏହା ଶୁଣି ଗୋପବନ୍ଧୁ ସ୍ତବ୍ଧ ହୋଇଗଲେ ଏବଂ କିଛି ବେଳ ନୀରବ ରହି କାନ୍ଦିବାକୁ ଆରମ୍ଭ କଲେ। ସେ ଭାବାବେଗରେ କହି ପକାଇଲେ,''ବନ୍ଧୁଗଣ, ମୁଁ ବନ୍ୟାପ୍ରପୀଡ଼ିତ ଲୋକଙ୍କ ପାଖକୁ ଯାଉଛି। ମୋ ପୁଅ ଦାୟିତ୍ୱ ତୁମମାନଙ୍କ ଉପରେ ରହିଲା।'' ଏହା ଶୁଣି ବନ୍ଧୁମାନେ ପାଟି କଲେ ''ଗୋପ, ପୁଅକୁ ଏପରି ରୁଗ୍ଣାବସ୍ଥାରେ ଛାଡ଼ି ଯିବାଟା ହୃଦୟହୀନତା ହେବ ନାହିଁକି ? ଦିନେ ଦୁଇ ଦିନ ଅପେକ୍ଷା କର। ପୁଅକୁ ଏପରି ଅବସ୍ଥାରେ ଛାଡ଼ି ଦେଇ କୌଣସି ବାପ ଯାଇପରେ କି?'' ଗୋପବନ୍ଧୁ ଶାନ୍ତ ଭାବରେ ଜବାବ ଦେଲେ, ''ଜନ୍ମ ମରଣ ମଣିଷ ହାତରେ ନାହିଁ। ଏହା ଭଗବାନଙ୍କ ହାତରେ। ମୁଁ ସେହି ଭଗବାନଙ୍କ ହାତରେ ପୁଅକୁ ଛାଡ଼ି ଦେଇ ଯାଉଛି। ମୁଁ ଗୋଟିଏ ପୁଅର ଜୀବନ ବଞ୍ଚାଇବା ପାଇଁ ଏଠି ରହିଗଲେ ତେଣେ ବନ୍ୟାଞ୍ଚଳରେ ଶତଶତ ପୁତ୍ର ମୃତ୍ୟୁ ମୁଖରେ ପଡ଼ିବେ। ମୋର ଏକ-ମାତ୍ର ପୁତ୍ରର ମୃତ୍ୟୁରେ ମୋ ପିତୃହୃଦୟ ଶୋକାଭିଭୂତ ହେବ ବୋଲି ଶତ ଶତ ପିତା ସେମାନଙ୍କ ଏକ-ମାତ୍ର ପୁତ୍ରମାନଙ୍କୁ ହରାଇ ଶୋକାଭିଭୂତ ହେବା ଲାଗି ଛାଡ଼ିଦେବା ପାଇଁ ମୋର କି ଅଧିକାର ଅଛି? ମୁଁ ମୋ ପୁଅକୁ ଯେତିକି ଭଲ ପାଏ, ସେମାନେ ମଧ୍ୟ ସେମାନଙ୍କ ପୁଅମାନଙ୍କୁ ସେତିକି ଭଲ ପାଉଥିବେ। ମୁଁ ଚାଲିଲି,'' ଏହା କହି ଗୋପବନ୍ଧୁ ଘର ଛାଡ଼ି ଚାଲିଗଲେ, ତାଙ୍କ ବନ୍ଧୁମାନେ ତାଙ୍କୁ ଅଟକାଇ ପାରିଲେ ନାହିଁ। ସେଠାରେ ଉପସ୍ଥିତ ଥିବା ବନ୍ଧୁମାନେ ଏହା ଲୋକଦେଖାଣିଆ ଆଚରଣ ବୋଲି ବର୍ଣ୍ଣନା କରି ଗୋପବନ୍ଧୁଙ୍କୁ ତୀବ୍ର ସମାଲୋଚନା

କଲେ। କିନ୍ତୁ ଗୋପବନ୍ଧୁଙ୍କ ପରି ମହାନ ଆତ୍ମାଙ୍କ ଭାବାବେଗକୁ ମାପିବା ସାଧାରଣ ଲୋକଙ୍କ ପକ୍ଷରେ ସମ୍ଭବପର ନ ଥିଲା।

ପିତାମାତା, ସ୍ତ୍ରୀ, ଗୁରୁ ଓ ପୁତ୍ର ମାନଙ୍କୁ ହରାଇ ଗୋପବନ୍ଧୁ ଏକାକୀ ନିଜ ସ୍ୱାଧୀନ ଜୀବନ ଆରମ୍ଭ କଲେ। ତାଙ୍କ ଦୁଇଝିଅ ଭାଇନା ନାରାୟଣଙ୍କ ଜିମାରେ ରହିଲେ। ଏହିପରି ଭାବରେ ତାଙ୍କ ସେବା ଓ ନିଷ୍ଠା ତାଙ୍କୁ ଆଧୁନିକ ଉତ୍କଳର ଜନକ ଆସନ ଦେଇଛି ଏବଂ ବଙ୍ଗଳାର ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ପରି ଜଣେ ମନୀଷୀ ତାଙ୍କୁ ''ଉତ୍କଳମଣି'' ଉପାଧିରେ ବିଭୂଷିତ କରିଛନ୍ତି। ଏହି ''ଉତ୍କଳମଣି'' ନାମରେ ସେ ପ୍ରତ୍ୟେକ ଓଡ଼ିଆ ପରିବାରରେ ସୁପରିଚିତ।

# ରାଜନୀତିରେ ପ୍ରବେଶ

ଗୋପବନ୍ଧୁ କଟକରେ ଛାତ୍ର ଥିବାବେଳେ ପରେ କୁଳବୃଦ୍ଧ ଭାବରେ ବର୍ଣ୍ଣିତ ମଧୁସୂଦନ ଦାସ ସହରରେ ଉତ୍କଳ ସମ୍ମିଳନୀର ଅଧିବେଶନ କରାଇଥିଲେ। ଏହି ସମ୍ମିଳନୀର ଲକ୍ଷ୍ୟ ଥିଲା; ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ରହିଥିବା ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଏବଂ ଏହି ଅଞ୍ଚଳବାସୀ ଲୋକଙ୍କର ସାମାଜିକ ଓ ସାଂସ୍କୃତିକ ବିକାଶ ସାଧନ କରାଇ ସେମାନଙ୍କ ହୃଦୟରେ ଓଡ଼ିଆ ଜାତୀୟତାର ସଂରକ୍ଷଣ। 1903ରେ ଏହି ସମ୍ମିଳନୀର ଗୋଟିଏ ଅଧିବେଶନ ଅନୁଷ୍ଠିତ ହୋଇଥିଲା ଏବଂ ଗୋପବନ୍ଧୁ ଜଣେ ଛାତ୍ରନେତା ଭାବରେ ଏଥିରେ ଯୋଗ ଦେଇଥିଲେ। ସେତେବେଳେ ବିଚ୍ଛିନ୍ନାଞ୍ଚଳଗୁଡ଼ିକର ଏକତ୍ରୀକରଣ ବିଷୟରେ ଓଡ଼ିଆ ନେତାମାନଙ୍କ ମଧ୍ୟରେ ଦୁଇଗୋଟି ମତବାଦ ସୃଷ୍ଟି ହୋଇଥିଲା। ମଧୁସୂଦନ ଦାସଙ୍କ ନେତୃତ୍ୱରେ ଗୋଟିଏ ଦଳ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ବଙ୍ଗଳା ସହିତ ମିଶାଇ ଦେବାକୁ ଚାହୁଁଥିଲେ, କିନ୍ତୁ ଗୋପବନ୍ଧୁଙ୍କ ଯୁକ୍ତି ଥିଲା ଯେ ବଙ୍ଗାଳୀମାନେ ଗୋଟିଏ ଉନ୍ନତ ଜାତି ହୋଇଥିବାରୁ ଓଡ଼ିଆମାନେ ତାଙ୍କ ସଂଗେ ମିଶିଲେ ସେମାନଙ୍କ ଆଧିପତ୍ୟ ସ୍ୱୀକାର କରିବାକୁ ବାଧ୍ୟ ହେବେ। ସେ ଚାହୁଁଥିଲେ, ମଧ୍ୟପ୍ରଦେଶ ସହିତ ଓଡ଼ିଆମାନେ ମିଶିଯାନ୍ତୁ, କାରଣ ଉକ୍ତ ପ୍ରଦେଶର ଅଧିବାସୀ ଅପେକ୍ଷାକୃତ ଅନୁନ୍ନତ ଏବଂ ତାଙ୍କ ସଂଗେ ମିଶିଗଲେ ଓଡ଼ିଆମାନେ ନିଜ ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରିବେ। ସେ ସେଠାରେ ସମବେତ ଉଚ୍ଚସ୍ତରୀୟ ନେତାମାନଙ୍କ ସମ୍ମୁଖରେ ନିଜ ମତକୁ ନିର୍ଭୀକ ଭାବରେ କେବଳ ପ୍ରକାଶ କରି ନ ଥିଲେ, ସେ ମଧ୍ୟ ପତ୍ରପତ୍ରିକାମାନଙ୍କରେ ନିଜ ମତକୁ ସମର୍ଥନ କରି ଲେଖାମାନ ପ୍ରକାଶ କରିଥିଲେ। ସେହିଦିନଠାରୁ ଉତ୍କଳ ସମ୍ମିଳନୀ ସହିତ ଗୋପବନ୍ଧୁଙ୍କର ଘନିଷ୍ଠ ସଂପର୍କ ସ୍ଥାପିତ ହେଲା।

ଛାତ୍ରଭାବରେ ଗୋପବନ୍ଧୁ ସରଳ ଜୀବନ ଯାପନ କରୁଥିଲେ। ତାଙ୍କ ସୀମିତ ପରିସରରେ ସେ ଓଡ଼ିଶାର ତନ୍ତଶିଳ୍ପକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ନିଜେ ଗୋଟିଏ ତନ୍ତବୁଣା ଧୋତି ଓ ଚାଦର ବ୍ୟବହାର କରୁଥିଲେ। ପ୍ରବାଦ ଅଛି ଯେ ତାଙ୍କ କଲେଜ ଜୀବନରେ ପରବର୍ତ୍ତୀ ଆଚାର୍ଯ୍ୟ ହରିହର ଦାଶ ତାଙ୍କପାଇଁ ରଣପୁରରେ ତିଆରି ହଳେ ତନ୍ତବୁଣା ଲୁଗା ଅଢ଼େଇ ଟଙ୍କା ଦାମ ଦେଇ କିଣି ଆଣିଥିଲେ। ଜଣେ ଗରିବ ଛାତ୍ର ପକ୍ଷରେ ଲୁଗା ଯୋଡ଼ିକ ଅତି ମୂଲ୍ୟବାନ ମନେକରି ଗୋପବନ୍ଧୁ ତାହାକୁ ପିନ୍ଧି ନ ଥିଲେ।

ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଗୋପବନ୍ଧୁ ରେଭେନ୍‌ସା କଲେଜରେ ଇଂରାଜୀ ଏମ୍. ଏ. ଓ ଆଇନ୍ ଶ୍ରେଣୀରେ ନାମ ଲେଖାଇଲେ। ସ୍ନାତକୋତ୍ତର ଶିକ୍ଷାକୁ ଏକ ବିଳାସ ରୂପେ ବିବେଚନା କରି ସେ ପାଠପଢ଼ା ଖର୍ଚ୍ଚ ବହନ କରିବା ବିଷୟରେ ଭାଇନା ବା ଅନ୍ୟ କୌଣସି ଉପକାରୀ ଲୋକଙ୍କ ଉପରେ ନିର୍ଭର ନ କରି ନିଜେ ଉପାର୍ଜ୍ଜନ କରିବାକୁ ମନସ୍ଥ କଲେ। ଏହି ସମୟରେ ସେ ଶିକ୍ଷା ବିଭାଗର ଦୁଇଜଣ ପୁରୁଖା ଅଫିସର ତଥା ବିଶିଷ୍ଟ ସାହିତ୍ୟିକ ରାୟ ବାହାଦୂର ରାଧାନାଥ ରାୟ ଓ ରାୟ ବାହାଦୂର ମଧୁସୂଦନ ରାଓଙ୍କ ସହିତ ଘନିଷ୍ଠ ସଂପର୍କରେ ଆସିଥିଲେ, ସରକାରୀ ଚାକିରୀ କରିବା ଅଭିଳାଷ ନ ଥିବାରୁ ଗୋପବନ୍ଧୁ ଏମ୍. ଏ. ପଢ଼ା ଛାଡ଼ି କେବଳ ଆଇନ ପାଠରେ ମନ ଦେଲେ। ସେ ଦେଢ଼ ବର୍ଷ କାଳ ରେଭେନ୍‌ସା କଲେଜରେ ଆଇନ ପଢ଼ିଲେ; ତାପରେ ଅବଶିଷ୍ଟ ପାଠ୍ୟକ୍ରମ ଶେଷ କରି ପରୀକ୍ଷା ଦେବାଲାଗି କଲିକତା ଗଲେ। ସେ ବଡ଼ବଜାରରେ ଗୋଟିଏ ବଙ୍ଗାଳୀ ମେସ୍‌ରେ ରହୁଥିଲେ। ଏହି ମେସ୍‌ରେ କଲିକତା ବିଶ୍ୱବିଦ୍ୟାଳୟରେ ପଢୁଥିବା ବହୁ ଓଡ଼ିଆ ଛାତ୍ର ଓ ବିଭିନ୍ନ କମ୍ପାନୀରେ କାମ କରୁଥିବା ବହୁ ଓଡ଼ିଆ କର୍ମଚାରୀ ରହୁଥିଲେ। ଏଠାରେ କେତେଜଣ ବଙ୍ଗାଳୀ ଅନ୍ତେବାସୀ ମଧ୍ୟ ଥିଲେ। ଉନ୍ନତ କଳିକତା ନଗରୀରେ ବାସ କରୁଥିଲେ ହେଁ ଗୋପବନ୍ଧୁ ଓଡ଼ିଆମାନଙ୍କ ପାରମ୍ପରିକ ଜୀବନଧାରା ଛାଡ଼ି ନଥିଲେ। ସକାଳେ ଗଙ୍ଗାନଦୀରେ ସ୍ନାନକରି ମେସ୍‌କୁ ଫେରିବାବେଳେ ବାଟରେ ଶ୍ରୀମଦ୍ ଭଗବତ୍ ଗୀତାର ଶ୍ଳୋକଗୁଡ଼ିକୁ ଉଚ୍ଚସ୍ୱରରେ ଗାଇ ଗାଇ ଆସୁଥିଲେ। କେତେ ଜଣ ବଙ୍ଗାଳୀ ବନ୍ଧୁ ତାଙ୍କର ଏହି ଖିଆଲୀ ସ୍ୱଭାବ ଯୋଗୁଁ ସମାଲୋଚନା କରୁଥିଲେ ହେଁ ଅନ୍ୟମାନେ ତାଙ୍କ ପବିତ୍ରତା, ଦେଶପ୍ରୀତି ଓ ବିଦ୍‌ବତ୍ତାରେ ମୁଗ୍ଧ ହେଉଥିଲେ। ସେତେବେଳେ ବହୁ ଶିକ୍ଷିତ ଓ ଉଚ୍ଚପଦାଧିଷ୍ଠିତ ବଙ୍ଗାଳୀଙ୍କ ଧାରଣା ଥିଲା, ଯେ ଓଡ଼ିଆମାନେ କେବଳ କୁଲି ଓ ପୂଝାରୀଙ୍କ ଜାତି। ଏକଥା ଜାଣିବା ପରେ ଗୋପବନ୍ଧୁ ସେମାନଙ୍କ ଘରକୁ ଯାଇ ଓଡ଼ିଶାର ହୃତ ଗୌରବଗାଥା ବର୍ଣ୍ଣନାକରି ସେମାନଙ୍କ ଭ୍ରାନ୍ତ ଧାରଣା ଦୂର କରିପାରିଥିଲେ। ଗୋପବନ୍ଧୁଙ୍କ ଏତାଦୃଶ ଉଦ୍ୟମ ଯୋଗୁ ଓଡ଼ିଆମାନଙ୍କ ସହିତ ସେମାନଙ୍କ ବଙ୍ଗାଳୀ ନିଯୋକ୍ତାମାନେ ସସମ୍ମାନେ ବ୍ୟବହାର କରିବାକୁ ଆରମ୍ଭ କଲେ।

1904ରେ କଟକ ସହରରେ ଉତ୍କଳ ସମ୍ମିଳନୀର ଅଧିବେଶନ ହେଲା ଓ ରାୟ ବାହାଦୂର ରାଜକିଶୋର ଦାସ ଅଭ୍ୟର୍ଥନା ସମିତିର ସଂପାଦକ ହୋଇଥିଲେ। ଏହି ଅନୁଷ୍ଠାନର ମହାନ୍ ଉଦ୍ଦେଶ୍ୟ ସମ୍ବନ୍ଧରେ ଅବହିତ ହୋଇ ଗୋପବନ୍ଧୁଙ୍କର କେତେଜଣ ବଙ୍ଗାଳୀ ବନ୍ଧୁ ସମ୍ମିଳନୀରେ ଯୋଗଦେବା ଲାଗି କଲିକତାରୁ ଆସିଥିଲେ। ଏହି ସମ୍ମିଳନୀ ଅନୁଷ୍ଠିତ ହେବା ବିଷୟରେ ଓଡ଼ିଆନେତା ମଧୁସୂଦନ ଦାସ ଏବଂ ଓଡ଼ିଶାବାସୀ ବଙ୍ଗାଳୀମାନଙ୍କ ନେତା ତଥା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପିତା ରାୟ ବାହାଦୂର ଜାନକୀନାଥ ବୋଷଙ୍କ ଭିତରେ ତୀବ୍ର ମତ-ପାର୍ଥକ୍ୟ ସୃଷ୍ଟି ହୋଇଥିଲା। ମଧୁବାବୁଙ୍କ ନିର୍ଦ୍ଦେଶରେ ବଙ୍ଗାଳୀମାନଙ୍କୁ ସମ୍ମିଳନୀ ମଣ୍ଡପକୁ ଛାଡ଼ି ଦିଆଗଲା ନାହିଁ। ଗୋପବନ୍ଧୁଙ୍କ

ସାଙ୍ଗରେ କେତେଜଣ ବଙ୍ଗାଳୀ ବନ୍ଧୁଙ୍କୁ ସମ୍ମିଳନୀ ଫାଟକରେ ଦେଖି ମଧୁବାବୁ ପାଟିକଲେ, ''ଏମାନଙ୍କୁ ଏ ପର୍ଯ୍ୟନ୍ତ ଆସିବାକୁ କିଏ ଅନୁମତି ଦେଲା ? ସେମାନେ ବାହାରି ଯାଆନ୍ତୁ ?'' ଏହି ଜାତୀୟ ମହାସଭାରେ ଏପରି ଆଞ୍ଚଳିକ ସଂକୀର୍ଣ୍ଣତା ଦେଖି ଗୋପବନ୍ଧୁ ଦୁଃଖିତ ହୋଇ ନିଜ ବଙ୍ଗାଳୀ ବନ୍ଧୁମାନଙ୍କ ସହିତ ନିଜେ ମଧ୍ୟ ସମ୍ମିଳନୀ ମଣ୍ଡପରୁ ବାହୁଡ଼ି ଆସିଲେ। ସେ ସେଦିନ ବିରକ୍ତିରେ ମଧୁବାବୁଙ୍କୁ ଏକ ପତ୍ରଲେଖି ତତ୍ ସହିତ ସମ୍ମିଳନୀ ଟୋପିକୁ ମଧ୍ୟ ଫେରାଇ ଦେଇଥିଲେ। ଏହି ପତ୍ର ଯୋଗୁ ମଧୁବାବୁ ନିଜ ଭୁଲ ବୁଝିପାରି ଗୋପବନ୍ଧୁ ଓ ତାଙ୍କ ବନ୍ଧୁମାନଙ୍କ ନିକଟରେ କ୍ଷମାପ୍ରାର୍ଥନା କରିଥିଲେ। ପରଦିନ ସମ୍ମିଳନୀ ଫାଟକରେ ମଧୁବାବୁ ଗୋପବନ୍ଧୁଙ୍କୁ ଦେଖିବା ମାତ୍ରକେ କୁଣ୍ଢାଇ ପକାଇ ଥିଲେ। ଏହିପରି ଭାବରେ ଦେଶର ଉଚ୍ଚ ଓ କ୍ଷମତାଶାଳୀ ଲୋକଙ୍କ ପାଖରେ ସେ ନିଜ ସାହସ ଓ ନିର୍ଭୀକତା ପ୍ରଦର୍ଶନ କରି ପାରିଥିଲେ।

# ଓକିଲାତି

ଛାତ୍ରଜୀବନ ଶେଷ ହେବା ମାତ୍ରକେ ଗୋପବନ୍ଧୁ ମାନସିକ ଦ୍ୱନ୍ଦ୍ୱରେ ପଡ଼ିଲେ। ସେ ଗୁରୁଦେବ ରାମଚନ୍ଦ୍ର ଦାଶଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ସ୍ୱାଧୀନ ଜୀବନ ଯାପନ କରି ସମାଜ ସେବା କରିବେ, ତେଣୁ ସେ ଓକିଲାତି କରିବା ଲାଗି ଯୋଗ୍ୟତା ହାସଲ କଲେ। କିନ୍ତୁ ସେ ଶିକ୍ଷାକୁ ଭଲ ପାଉଥିଲେ ଏବଂ ଛାତ୍ର ଜୀବନରେ ମଧ୍ୟ ଶିକ୍ଷା ପ୍ରସାର ଉଦ୍ଦେଶ୍ୟରେ ଦାକ୍ଷିଣାତ୍ୟ ଶିକ୍ଷା ସମିତି ଛାଞ୍ଚରେ ଗୋଟିଏ ସ୍ୱୟଂଶାସିତ ଅନୁଷ୍ଠାନ ଗଢ଼ିବା ଲାଗି କଳ୍ପନା କରିଥିଲେ। ଜାତୀୟତା ଭିତ୍ତି ଉପରେ ପ୍ରତିଷ୍ଠିତ କୌଣସି ଶିକ୍ଷାନୁଷ୍ଠାନ ସ୍ଥାପିତ ହେଲେ ସେଠାରେ କାମ କରିବା ଲାଗି ସେ କେତେଜଣ ତରୁଣ ବୁଦ୍ଧିଜୀବୀଙ୍କ ଠାରୁ ପ୍ରତିଶ୍ରୁତି ପାଇଥିଲେ। ଗୋପବନ୍ଧୁ ଉପଲବ୍ଧି କରିଥିଲେ ଯେ ଓଡ଼ିଶା ପରି ଏକ ଦରିଦ୍ର ରାଜ୍ୟରେ ବିଦ୍ୟାଳୟ ସ୍ଥାପନ ପାଇଁ ଦାମିକା କୋଠାବାଡ଼ି ନିର୍ମାଣ କରିବା ଅସମ୍ଭବ, ହୁଏ ତ ଅନାବଶ୍ୟକ। ମଫସଲ ଅଞ୍ଚଳରେ ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟରେ ବିଦ୍ୟାଳୟ ସ୍ଥାପିତ ହେଲେ ଅଳ୍ପ ଖର୍ଚ୍ଚରେ ଶିକ୍ଷାଦାନ ହୋଇପାରିବ। ପ୍ରଚଳିତ ସମାଜର ଶିକ୍ଷାଗତ ଆଦର୍ଶକୁ ସେ ନାପସନ୍ଦ କରୁଥିଲେ; ସେ ଯେତେବେଳେ ଦେଖିଲେ ଯେ ଜଣେ ପିଅନର ପୁଅ କେବଳ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଛି ବୋଲି ଜଣେ ପିଅନ ହେବାକୁ କିମ୍ୱା ଚାଷ କରିବାକୁ ନିଜ ବାପାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲା, ତାଙ୍କର ଏହି ଧାରଣା ଦୃଢ଼ୀଭୂତ ହୋଇଗଲା। ସେ ଦେଖିଲେ, ପାଶ୍ଚାତ୍ୟ ଢଙ୍ଗରେ ପରିଚାଳିତ ଶିକ୍ଷାନୁଷ୍ଠାନରୁ ଉତ୍ତୀର୍ଣ୍ଣ ଅର୍ଦ୍ଧ ଶିକ୍ଷିତ ବାବୁମାନେ ସାଧାରଣ ଲୋକଙ୍କ ଆଶା ଆକାଙ୍‌କ୍ଷା ସହିତ ନିଜକୁ ଖାପ ଖୁଆଇ ପାରୁ ନାହାନ୍ତି ଓ କାୟିକ ଶ୍ରମ ପ୍ରତି ବିମୁଖ ହେଉଛନ୍ତି। ସେ ଶିକ୍ଷାକୁ ପସନ୍ଦ କରୁଥିଲେ ବୋଲି ଗୋଟିଏ ଶିକ୍ଷାନୁଷ୍ଠାନର ପରିଚାଳନା ବିଷୟରେ ଅଭିଜ୍ଞତା ଅର୍ଜନ କରିବାକୁ ବ୍ୟଗ୍ର ଥିଲେ।

ତାଙ୍କ ସୌଭାଗ୍ୟକୁ ସେତିକି ବେଳେ ନୀଳଗିରି ଗଡ଼ଜାତରେ ଗୋଟିଏ ସ୍କୁଲ ବସାଇବା ପ୍ରସ୍ତାବ ହେଲା। ଉଦ୍ୟୋକ୍ତାମାନେ ଜଣେ ସ୍ନାତକ ଉପାଧିଧାରୀ ପ୍ରଧାନ ଶିକ୍ଷକ ଖୋଜୁଥିଲେ। ସେମାନେ ଗୋପବନ୍ଧୁଙ୍କୁ ଏହି ପ୍ରସ୍ତାବ ଜଣାଇବାରୁ ସେ ନିଜ ସହପାଠୀ ଉମା ଚରଣ ଦାସଙ୍କୁ ପ୍ରଧାନ ଶିକ୍ଷକ ହେବା ଲାଗି ପଠାଇଲେ। ପରବର୍ତ୍ତୀକାଳରେ ଆଚାର୍ଯ୍ୟ ହରିହର ଦାଶ ଦ୍ୱିତୀୟ ଶିକ୍ଷକ ରୂପେ ଯୋଗ ଦେଲେ। ହରିହର ଶୃଙ୍ଖଳାପ୍ରିୟ ଥିଲେ, ଛାତ୍ରମାନଙ୍କୁ ପ୍ରାଚୀନ ଗୁରୁକୂଳ ଆଦର୍ଶରେ ଅନୁପ୍ରାଣିତ କରିବା ତାଙ୍କର

ଲକ୍ଷ୍ୟ ଥିଲା। ଗୋଟିଏ ଅନୁନ୍ନତ ଗଡ଼ଜାତରେ ତାଙ୍କର ଏହି ଉଚ୍ଚ ଆଦର୍ଶ ଆଦୃତ ହେଲା ନାହିଁ; ଫଳରେ ଉମା ଚରଣ ପ୍ରଧାନ ଶିକ୍ଷକ ପଦରୁ ଇସ୍ତଫା ଦେଇ ଡେପୁଟୀ କଲେକ୍ଟର ଚାକିରୀ ଗ୍ରହଣ କଲେ। ସ୍କୁଲ ଆରମ୍ଭ ହେବା ଦିନ ଠାରୁ ଗୋପବନ୍ଧୁ ଏଥି ସହିତ ସଂପୃକ୍ତ ଥିଲେ ବୋଲି ଉମାଚରଣଙ୍କ ପରେ ସେ ନିଜେ ପ୍ରଧାନ ଶିକ୍ଷକ ହୋଇ ଛ'ମାସ ପର୍ଯ୍ୟନ୍ତ କାମ କରିଥିଲେ। ତାଙ୍କ ସ୍ୱଳ୍ପକାଳ ରହଣି ମଧରେ ସ୍କୁଲକୁ ସ୍ଥାୟୀ କରିବାଲାଗି ସେ ପ୍ରଗାଢ଼ ଉଦ୍ୟମ କରିଥିଲେ, କିନ୍ତୁ ତତ୍କାଳୀନ ଓଡ଼ିଶାର ପଲିଟିକାଲ ଏଜେଣ୍ଟ କବ୍‌ଡେନ ରାମ୍‌ସେଙ୍କ ପ୍ରତିରୋଧ ଯୋଗୁ ତାଙ୍କ ଉଦ୍ୟମ ସଫଳ ହେଲା ନାହିଁ। ଗୋପବନ୍ଧୁଙ୍କ ଚିତ୍ତ ସର୍ବଦା ଅସ୍ଥିର ଥିଲା ଏବଂ ପ୍ରଦେଶର ସର୍ବାଙ୍ଗୀନ ଉନ୍ନତି ଲାଗି ତାଙ୍କର ଏତେ ପ୍ରକାର ଭାବନା ଥିଲା ଯେ ଗୋଟିଏ ଗଡ଼ଜାତୀ ସ୍କୁଲର ସଂକୀର୍ଣ୍ଣ ବାତାବରଣ ତାଙ୍କ ବିବିଧ କାର୍ଯ୍ୟ ପାଇଁ ସୁଯୋଗ ଯୋଗାଇ ପାରିଲା ନାହିଁ। ତେଣୁ ଛ ମାସ ପରେ ସେ କଟକ ଫେରିଆସି ଓକିଲାତି ଆରମ୍ଭ କଲେ।

ନୀଳଗିରିରେ ଥିବାବେଳେ ସେ ଓ ହରିହର ଗୋଟିଏ ସ୍ୱେଚ୍ଛା ସେବକ ବାହିନୀ ଗଠନ କରିଥିଲେ। ଦିନେ ଦୁଇ ବନ୍ଧୁ ସାନ୍ଧ୍ୟ ଭ୍ରମଣ କରିବା ବେଳେ ଦୁହେଁ ରାସ୍ତା କଡ଼ରେ ଗୋଟିଏ ପଶ୍ଚିମା ସ୍ତ୍ରୀ ଲୋକ ଦୁଃସ୍ଥ ଅବସ୍ଥାରେ ପଡ଼ିଥିବାର ଦେଖିଲେ। ସେ ପୁରୀରୁ ତୀର୍ଥ କରି ଫେରୁଥିଲା। ତାର ଗୋଟିଏ ଛୋଟ ପୁଅ ହଇଜାରେ ଆକ୍ରାନ୍ତ ହୋଇ ପାଖରେ ମରି ପଡ଼ିଥିଲା ଓ ସ୍ତ୍ରୀ ଲୋକଟି ଖୁବ୍ ବିକଳରେ କାନ୍ଦୁଥିଲା। ସମସ୍ତ ହାଲ ଶୁଣି ମୃତ ପୁତ୍ରର ଶବସଂସ୍କାର ବ୍ୟବସ୍ଥା କଲେ, କିନ୍ତୁ ଜାତି ଯିବା ଭୟରେ ସ୍ତ୍ରୀଲୋକଟି ତା ପୁଅର ଶବକୁ ଛୁଇଁବା ପାଇଁ ସେମାନଙ୍କୁ ଅନୁମତି ଦେଲା ନାହିଁ। ତେଣୁ ଦେଶପ୍ରେମୀ ବନ୍ଧୁ ଦୁହେଁ ଆବଶ୍ୟକ ପଦାର୍ଥ ଓ କାଠ ଆଣି ରାସ୍ତା କଡ଼ରେ ଚିତାଗ୍ନି ପ୍ରସ୍ତୁତ କରି ଦେଲେ ଓ ପୁତ୍ରର ଶବକୁ ଚିତାରେ ଶୁଆଇ ଦେବା ଲାଗି ସ୍ତ୍ରୀଲୋକଟିକୁ ନିର୍ଦ୍ଦେଶ ଦେଲେ। ଏହାପରେ ସେମାନେ ସ୍ତ୍ରୀଲୋକଟିକୁ ସାନ୍ତ୍ୱନା ଦେଇ ଓ କିଛି ଅର୍ଥ ସାହାଯ୍ୟ କରି ନିଜ ଗୃହକୁ ଫେରିବାର ସୁବନ୍ଦୋବସ୍ତ କରିଦେଲେ। ଗୋପବନ୍ଧୁ ଓ ହରିହର ଜଣେ ଅପରିଚିତ ଲୋକର ଶବସଂସ୍କାର କରିଥିବାରୁ ସ୍ଥାନୀୟ ରକ୍ଷଣଶୀଳ ବ୍ରାହ୍ମଣମାନେ ଏହାକୁ ଏକ ଅକ୍ଷମଣୀୟ ପାପ କାର୍ଯ୍ୟ ବୋଲି ବିଚାର କରି ଦୁହିଁଙ୍କୁ ଜାତିରୁ ବାସନ୍ଦ କଲେ। ସେମାନେ ଏଥିରେ ଦବି ନ ଯାଇ ନାନାବିଧ ସ୍ୱେଚ୍ଛାସେବୀ କାର୍ଯ୍ୟ କରିବାରେ ଲାଗିଲେ, ଶେଷରେ ବ୍ରାହ୍ମଣମାନେ ନିଜ ଭୁଲ ବୁଝି ପାରି ସେମାନଙ୍କ ପାଖରେ କ୍ଷମା ପ୍ରାର୍ଥନା କଲେ। ନୀଳଗିରିରେ ସ୍ୱଳ୍ପକାଳ ରହଣି ମଧରେ ଗୋପବନ୍ଧୁ ଉକ୍ତ କରଦ ରାଜ୍ୟର ବହୁ ସରକାରୀ କର୍ମଚାରୀଙ୍କୁ ସମାଜ ସେବା ଓ ଜାତୀୟତାରେ ଅନୁପ୍ରାଣିତ କରିପାରିଥିଲେ। ସେଠାରେ ଅବସ୍ଥାନକାଳରେ ଗୋପବନ୍ଧୁ, ହରିହର ଓ ଆଉ କେତେଜଣ ପ୍ରତିନିଧିରୂପେ ଯାଇ କଲିକତାରେ ଦାଦାଭାଇ ନାରୋଜୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ନିଖିଳ ଭାରତ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଇଥିଲେ। ନାରୋଜୀ ତାଙ୍କ ସଭାପତି ଅଭିଭାଷଣରେ

ଘୋଷଣା କଲେ- "ସ୍ୱାଧୀନତା ହେଉଛି, କଂଗ୍ରେସର ଲକ୍ଷ୍ୟ। " ଗୋପବନ୍ଧୁ ଏହି ଘୋଷଣାରେ ଏତେ ଦୂର ବିମୁଗ୍ଧ ହୋଇ ଗଲେ ଯେ ସେହି ଦିନ ଠାରୁ ସେ କଂଗ୍ରେସ ଅନୁଷ୍ଠାନ ସହିତ ସଂପୃକ୍ତ ରହିବାକୁ ନିଷ୍ପତ୍ତି କରିଦେଲେ। ନୀଳଗିରିରେ ଥିବା ବେଳେ ଗୋପବନ୍ଧୁ ଆଇନ ପରୀକ୍ଷାରେ ସାଫଲ୍ୟ ଓ ପତ୍ନୀଙ୍କ ବିୟୋଗ ସଂବାଦ ପାଇଥିଲେ।

1906ରେ ସେ ନୀଳଗିରିରୁ ଆସି କଟକରେ ଓକିଲାତି ଆରମ୍ଭ କଲେ। ସେ ଦିନାକେତେ କଟକର ତତ୍କାଳୀନ ବିଖ୍ୟାତ ଆଇନଜୀବୀ ମଧୁସୂଦନ ଦାସ, ଗୋକୁଳାନନ୍ଦ ଚଉଧୁରୀ ଓ ବୈକୁଣ୍ଠନାଥ ଦତ୍ତଙ୍କ ସିରସ୍ତାରେ କନିଷ୍ଠ ଓକିଲ ରୂପେ କାମ ଶିଖିଲେ। ଏହି ବ୍ୟବସାୟ ପଇସା ଦେଲା ସିନା, କିନ୍ତୁ ତାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ, କାରଣ, ଏଥିରେ ସେ ଦୁଃସ୍ଥସେବା କରିବା ଲାଗି ସୁଯୋଗ ପାଇଲେ ନାହିଁ। ସେହି ବର୍ଷ ଅଗଷ୍ଟ ମାସରେ ବ୍ରାହ୍ମଣୀ, ବୈତରଣୀ ଓ ଖରସୁଆଁ ନଦୀରେ ପ୍ରବଳ ବନ୍ୟା ଆସି ବିପୁଳ କ୍ଷତି ସାଧନ କଲା। ଏତଦ୍ୱାରା କଟକ ଜିଲ୍ଲାର ଯାଜପୁର ଓ କେନ୍ଦ୍ରାପଡ଼ା ଅନୁବିଭାଗ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା। ବହୁ ସଂଖ୍ୟକ ଘର ଭାଙ୍ଗିଗଲା ଏବଂ ଅସଂଖ୍ୟ ମଣିଷ ଓ ଗୃହପାଳିତ ପଶୁ ପ୍ରାଣ ହରାଇଲେ। ଏହି ସଂବାଦ ପାଇ ଗୋପବନ୍ଧୁ ଅସ୍ଥିର ହୋଇ ପଡ଼ିଲେ। ଖାଦ୍ୟପଦାର୍ଥ ଓ ଲୁଗାପଟା ଚାନ୍ଦାରେ ସଂଗ୍ରହ କରି ରେଭେନ୍‌ସା କଲେଜର କେତେଜଣ ଛାତ୍ରଙ୍କୁ ସ୍ୱେଚ୍ଛାସେବକ ରୂପେ ସାଙ୍ଗରେ ନେଇ ସେ ତତ୍‌କ୍ଷଣାତ୍ ବନ୍ୟାକ୍ଲିଷ୍ଟ ଅଞ୍ଚଳକୁ ସେବାକାର୍ଯ୍ୟ କରିବାପାଇଁ ବାହାରି ଗଲେ। କ୍ଷୟକ୍ଷତିର ପରିମାଣ ଦେଖି ସେ ଏତେ ଦୂର ମର୍ମାହତ ହେଲେ ଯେ ସାମୟିକ ସାହାଯ୍ୟ ବ୍ୟବସ୍ଥା ବନ୍ୟା ସମସ୍ୟାର ପ୍ରକୃତ ପ୍ରତିକାର ନୁହେଁ ବୋଲି ଉପଲବ୍ଧି କଲେ। ଲୋକମାନଙ୍କ ମନରେ ଭବିଷ୍ୟତ ପାଇଁ ଆସ୍ଥା ସୃଷ୍ଟି କରିବାକୁ ହେଲେ ସେମାନଙ୍କୁ ଆସନ୍ତା ଫସଲ ପର୍ଯ୍ୟନ୍ତ ବଞ୍ଚାଇ ରଖିବା ଲାଗି ବ୍ୟବସ୍ଥା କରିବାକୁ ପଡ଼ିବ। ଏହି ଉଦ୍ଦେଶ୍ୟରେ ସେ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଆର. ସ. ଙ୍କୁ ସଭାପତି କରି ନିଜେ ସଂପାଦକ ରହି କେନ୍ଦ୍ରୀୟ ଯୁବ ଉତ୍କଳ ସଂଘ (Central Young Utkal Association) ଗଠନ କଲେ। କଲେଜର ଛାତ୍ରମାନେ ମୁଖ୍ୟତଃ ଏହାର ସଭ୍ୟ ରହିଲେ। ଖେଳ କସରତ, ନୈତିକ ଉତ୍‌ଥାନ, ଅର୍ଥନୈତିକ ଓ ଆର୍ଥିକ ବିକାଶ, ସାହିତ୍ୟ ଚର୍ଚ୍ଚା ଆଦି ଏହି ସଂଘର ଉଦ୍ଦେଶ୍ୟ ରୂପେ ଗୃହୀତ ହେଲା। ପ୍ରତ୍ୟେକ ବିଭାଗ ପାଇଁ ଜଣେ ଜଣେ ଓ ସଂଘ ପରିଚାଳନାପାଇଁ ଜଣେ ସଂପାଦକ ନିଯୁକ୍ତ ହେଲେ। ଓଡ଼ିଶାର ବିଭିନ୍ନାଞ୍ଚଳରେ ଦୁଃସ୍ଥସେବା କରିବାଲାଗି ଏହି ସଂଘ ମୁଖ୍ୟ ବ୍ୟବସ୍ଥାପକ ହେଲା। ଏହି ଅନୁଷ୍ଠାନଟି ଆରାମଚୌକୀରେ ବସୁଥିବା ରାଜନୈତିକ ନେତାମାନଙ୍କ ନିଷ୍ଠାହୀନ କାର୍ଯ୍ୟ ପରି ନଥିଲା। ନିଜ ଲକ୍ଷ୍ୟର ସଫଳ ରୂପାୟନ ପାଇଁ ଗୋପବନ୍ଧୁ ବିଭିନ୍ନ ହାଇସ୍କୁଲ ଓ ବିଭିନ୍ନ ଅଞ୍ଚଳରେ ଏହି ସଂଘର ଶାଖା ଗଠନ କଲେ। ବହୁ ବର୍ଷ ପର୍ଯ୍ୟନ୍ତ ଏହି ସଂଘଟି ଛାତ୍ରମାନଙ୍କ କାର୍ଯ୍ୟକ୍ରମର ମୁଖ୍ୟ କେନ୍ଦ୍ର ଥିଲା। କଟକ ଛାଡ଼ିବା ପରେ ବି ଗୋପବନ୍ଧୁ ଉକ୍ତ ସଂଘ ସହିତ

ସଂପର୍କ ହରାଇ ନଥିଲେ। ସେ ଯେଉଁଠି ଥିଲେ ବି ସେଠାରୁ ଏହାର କାର୍ଯ୍ୟ ପରିଚାଳନା ଲାଗି ନିର୍ଦ୍ଦେଶ ଦେଉଥିଲେ।

ବନ୍ୟା ବିଷୟରେ ତାଙ୍କର ଅତି ଦୁଃଖଦାୟକ ଅଭିଜ୍ଞତା ଥିଲା। ସେ ଓ ମଧୁସୂଦନ ଦାସ କଲିକତାର ''ଷ୍ଟେଟ୍ସମ୍ୟାନ'' ସଂବାଦପତ୍ରରେ ଏପରି ରୋମାଞ୍ଚକର ବିବରଣୀ ଛପାଇଲେ ଯେ ଭାରତ ସାରା ଆଲୋଡ଼ନ ସୃଷ୍ଟି ହୋଇଥିଲା। ଦେଶର ବିଭିନ୍ନ ପ୍ରାନ୍ତରୁ ଦେଶ-ହିତୈଷୀମାନେ ଆସି ବନ୍ୟା ପରିସ୍ଥିତି ଅନୁଧ୍ୟାନ କଲେ ଏବଂ ନାନା ପ୍ରକାର ସାହାଯ୍ୟ ବୋହି ଆସିଲା। ଏତଦପେକ୍ଷା କିଛି ଅଧିକ ଫଳପ୍ରଦ ଓ ସ୍ଥାୟୀ ପ୍ରତିକାର ବ୍ୟବସ୍ଥାର ଆବଶ୍ୟକତା ଅନୁଭୂତ ହେଲା। 1908 ଅପ୍ରେଲ ମାସରେ ପୁରୀ ଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ଗୋପବନ୍ଧୁ ନିମ୍ନଲିଖିତ ପ୍ରସ୍ତାବ ଆଗତ କରିଥିଲେ :

''ସାରା ଓଡ଼ିଶାରେ ଭୀଷଣ ବନ୍ୟା ଓ ତଜ୍ଜନିତ ଦୁର୍ଭିକ୍ଷ ପରିସ୍ଥିତି ସୃଷ୍ଟି ହୋଇଥିବାରୁ ଏହି ସମ୍ମିଳନୀ ପ୍ରସ୍ତାବ କରୁଛି ଯେ ଗୋଟିଏ ଦଶ ଜଣିଆ ସମିତି ଗଠିତ ହେଉ ଓ ଅଧିକ ସଭ୍ୟ ଗ୍ରହଣ କରିବା ଲାଗି ସେମାନଙ୍କୁ କ୍ଷମତା ଦିଆଯାଉ। ସେମାନେ ସମସ୍ୟାର ସ୍ଥାୟୀ ପ୍ରତିକାର ଲାଗି ସୁପାରିଶ କରନ୍ତୁ। ''

# ମୟୂରଭଞ୍ଜରେ ସରକାରୀ ଓକିଲ

ମୟୂରଭଞ୍ଜ ଓଡ଼ିଶାର 24ଗୋଟି କରଦ ରାଜ୍ୟ ମଧ୍ୟରେ ବୃହତ୍ତମ ଥିଲା। ସୂର୍ଯ୍ୟବଂଶୀ ରାଜାମାନେ ଏହାକୁ ଶାସନ କରୁଥିଲେ। ଏହି ରାଜ୍ୟଟି ବଙ୍ଗଦେଶର ନିକଟବର୍ତ୍ତୀ ଥିବାରୁ ବଙ୍ଗାଳୀମାନେ ସେଠାରେ ଉଚ୍ଚ ପଦବୀଗୁଡ଼ିକ ଅଧିକାର କରି ରହିଥିଲେ। ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ନାମକ ଜଣେ ଉଦାରମନା ନରପତି ରାଜ୍ୟ ଶାସନ ଦାୟିତ୍ୱ ବହନ କରିଥିଲେ। ରାଜ୍ୟର ଉନ୍ନତି ବିଷୟରେ ତାଙ୍କର ବହୁ ଅଗ୍ରଗାମୀ ଧାରଣା ଥିଲା। ସେ ଜଣେ ବିଶିଷ୍ଟ ଦେଶପ୍ରେମୀ ହିସାବରେ ଉତ୍କଳ ସମ୍ମିଳନୀ ଗଠନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ସେ ଜାଣିଥିଲେ ଯେ ଓଡ଼ିଶାର ଗୋଟିଏ କରଦ ରାଜ୍ୟରେ ବଙ୍ଗାଳୀମାନଙ୍କ ପ୍ରାଧାନ୍ୟ ଅସହଣୀୟ ଥିଲା। ତଥାପି ସେତେବେଳେ ଉଚ୍ଚ ଶିକ୍ଷିତ ଓଡ଼ିଆଙ୍କ ସଂଖ୍ୟା ସୀମିତ ଥିବାରୁ ବଙ୍ଗାଳୀମାନଙ୍କୁ ନିଯୁକ୍ତି ଦେବା ବ୍ୟତୀତ ତାଙ୍କର ଅନ୍ୟ କୌଣସି ବିକଳ୍ପ ପନ୍ଥା ନ ଥିଲା।

1909ରେ କଟକର ବିଶିଷ୍ଟ ଓକିଲ ମଧୁସୂଦନ ଦାସ ମହାରାଜାଙ୍କ ରାଜନୈତିକ ପରାମର୍ଶଦାତା ଥିଲେ। ସେ ମହାରାଜାଙ୍କୁ କହିଲେ , ତାଙ୍କ ରାଜଧାନୀ ବାରିପଦାରେ ବଙ୍ଗାଳୀମାନଙ୍କ ପ୍ରାଧାନ୍ୟ ଯୋଗୁ ଲୋକେ ଭାରି ଅସନ୍ତୁଷ୍ଟ। ଯୋଗ୍ୟ ଓଡ଼ିଆ ଲୋକ ମିଳିଲେ ସେମାନଙ୍କୁ ନିଯୁକ୍ତି ଦେବା ଉଚିତବୋଲି ମଧୁବାବୁ ପରାମର୍ଶ ଦେଲେ। ସେତିକିବେଳେ ମୟୂରଭଞ୍ଜର ସରକାରୀ ଓକିଲ ପଦ ଖାଲି ପଡ଼ିଲା ଓ ସେଥିପାଇଁ ଜଣେ ଓଡ଼ିଆ ଓକିଲଙ୍କୁ ବାଛି ଦେବା ଲାଗି ମଧୁବାବୁଙ୍କୁ ମହାରାଜା ଅନୁରୋଧ କଲେ। ମଧୁବାବୁଙ୍କ କଥାରେ ଓ ତାଙ୍କ ପ୍ରବର୍ତ୍ତନାରେ ଗୋପବନ୍ଧୁ ପୁରୀରେ ତାଙ୍କ ଓକିଲାତି ଛାଡ଼ି ବାରିପଦାରେ ସରକାରୀ ଓକିଲ ଭାବରେ ଯୋଗ ଦେଲେ।

ସେଠାକୁ ଯିବା ଆଗରୁ ଗୋପବନ୍ଧୁ କଟକରୁ ଯାଇ ପୁରୀରେ ଓକିଲାତି କରୁଥିଲେ। ସେତେବେଳେ ପୁରୀରେ ଅତି ଅଳ୍ପ ଓଡ଼ିଆ ଓକିଲ ଥିଲେ। ଗୋପବନ୍ଧୁ ଚାହିଁଥିଲେ ସେଠାରେ ଓକିଲାତି କରି ଖୁବ ରୋଜଗାର କରି ପାରିଥାନ୍ତେ, କିନ୍ତୁ ସମାଜ ସେବା କରିବାପାଇଁ ସେ ଅତି ବ୍ୟଗ୍ର ଥିଲେ। ଓକିଲାତି ତାଙ୍କ ଜୀବନର ଗୌଣ କାର୍ଯ୍ୟ ଥିଲା। ଜଣେ ମହକିଲ ତାଙ୍କ ପାଖକୁ ଆସିଲେ ମକଦ୍ଦମା କରି ଅଯଥା ପଇସା ଖର୍ଚ୍ଚ ନ କରିବାକୁ ସେ ତାଙ୍କୁ ପରାମର୍ଶ ଦେଉଥିଲେ। ଧନ ଓ କ୍ଷମତାଠାରୁ ଗୋପବନ୍ଧୁ ସାଧୁତା ଓ ଚରିତ୍ରବତ୍ତାକୁ ଗୁରୁତର ବୋଲି ବିଚାର କରୁଥିଲେ। ଥରେ

ତାଙ୍କର ଜଣେ ମହକିଲ ତାଙ୍କ ଅଜ୍ଞାତରେ ସରକାରୀ ଓକିଲଙ୍କୁ ପ୍ରଭାବିତ କରି ନିଜ ପାଖକୁ ଟାଣି ଆଣିଥିଲା। ଗୋପବନ୍ଧୁ ଏ କଥା ଶୁଣିବା ମାତ୍ରକେ ସେ ଯେ କେବଳ ମକଦ୍ଦମାକୁ ଛାଡ଼ି ଦେଇଥିଲେ, ସେତିକି ନୁହେଁ, ସେ ଓକିଲଙ୍କ ବିରୁଦ୍ଧରେ ଜାଣିଥିବା କଥା ଗୁଡ଼ିକୁ ଗୋଟିଏ ଗୁପ୍ତ ପତ୍ରରେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ଜଣାଇ ଦେଇଥିଲେ। ଫଳରେ ସରକାରୀ ଓକିଲ ବରଖାସ୍ତ ହେଲେ ଏବଂ ଭବିଷ୍ୟତରେ ଏଭଳି ଦାୟିତ୍ୱ ଗ୍ରହଣ କରିବା ଲାଗି ସ୍ଥାୟୀ ଭାବରେ ଅଯୋଗ୍ୟ ଘୋଷିତ ହେଲେ।

ଗୋପବନ୍ଧୁଙ୍କର ସମାଜ ସେବା ପ୍ରତି ଆଗ୍ରହ ଦେଖି ଜିଲ୍ଲା ମାଜିଷ୍ଟ୍ରେଟ ତାଙ୍କୁ ସ୍ଥାନୀୟ କୁଷ୍ଠାଶ୍ରମର ସଂପାଦକ ନିଯୁକ୍ତ କଲେ। ଯେ କୌଣସି ଦାୟିତ୍ୱ ହାତକୁ ନେଲେ ନିଷ୍ଠା ଓ ଉତ୍ସାହର ସହିତ ତାହା ସଂପାଦନା କରିବା ଗୋପବନ୍ଧୁଙ୍କ ଅଭ୍ୟାସ ଥିଲା। ତେଣୁ କୁଷ୍ଠାଶ୍ରମର ସଂପାଦକ ପଦ ଗ୍ରହଣ କରିବା ମାତ୍ରକେ ସେ ଚାନ୍ଦା ସଂଗ୍ରହ କରି ଏହାକୁ ଗୋଟିଏ ସୁଦୃଢ଼ ଅନୁଷ୍ଠାନରେ ପରିଣତ କରିଥିଲେ। ସେ ନିଜ ଆୟରୁ ମଧ୍ୟ କିଛି କିଛି ଏହି ଅନୁଷ୍ଠାନକୁ ଦେଉଥିଲେ। ତାଙ୍କର ଏତାଦୃଶ କାର୍ଯ୍ୟାବଳୀ ଯୋଗୁ ସେ ପୁରୀ ନଗର ପାଳିକାର ଜଣେ ପ୍ରତିନିଧି ଓ ସାକ୍ଷୀଗୋପାଳ ମନ୍ଦିରର ନ୍ୟାସୀ ରୂପେ ମନୋନୀତ ହୋଇଥିଲେ। ଛାତ୍ରମାନେ କସରତ କରିବା ପାଇଁ ସେ ଗୋଟିଏ ବ୍ୟାୟାମଶାଳା ନିର୍ମାଣ କରିଥିଲେ। ପୁରୀ ରହଣି ଶେଷ ହୋଇ ଆସିବାବେଳକୁ ସେ ସାକ୍ଷୀଗୋପାଳ ଠାରେ ଗୋଟିଏ ହାଇସ୍କୁଲ ସ୍ଥାପନ କରିବା କଥା ନିଷ୍ପତ୍ତି କଲେ। ପ୍ରାଥମିକ ପଦକ୍ଷେପ ସ୍ୱରୂପ ସେ ଉଣେଇଶି ଜଣ ଛାତ୍ରଙ୍କୁ ନେଇ ନିଜେ ସଂପାଦକ ରହି 1909 ମସିହା ଅଗଷ୍ଟ ବାର ତାରିଖ ଦିନ ଗୋଟିଏ ମାଇନର ସ୍କୁଲ ବସାଇଲେ। ଓଡ଼ିଶାର ଜାତୀୟ ଜୀବନକୁ ବିଶେଷ ଭାବରେ ପ୍ରଭାବିତ କରିଥିବା ସାକ୍ଷୀଗୋପାଳ ବନ ବିଦ୍ୟାଳୟର ଏହା ହିଁ ଥିଲା ପ୍ରାରମ୍ଭ। ପ୍ରାୟ ଦେଢ଼ ବର୍ଷ ଓକିଲାତି ପରେ ମଧୁସୂଦନଙ୍କ ନିର୍ଦ୍ଦେଶରେ ସେ ଭାରାକ୍ରାନ୍ତ ହୃଦୟରେ ଚାକିରୀ କରିବାପାଇଁ ବାରିପଦା ଗଲେ।

ମୟୂରଭଞ୍ଜରେ ଗୋପବନ୍ଧୁ ଗୋଟିଏ ଅନୁଷ୍ଠାନ ହୋଇଗଲେ। ସେ ସରକାରୀ ଓକିଲ ନିଯୁକ୍ତି ହୋଇଥିଲେ ସିନା, ରାଜ୍ୟର ସବୁ ବିଷୟରେ ସେ ସକ୍ରିୟ ଉତ୍ସାହ ପ୍ରଦର୍ଶନ କରୁଥିଲେ। ସେ ଜାଣିଥିଲେ ଯେ ସବୁ ପ୍ରକାର କାର୍ଯ୍ୟ ପାଇଁ ଭାବ ବିହ୍ୱଳ ଛାତ୍ରମାନଙ୍କୁ ଆୟୁଧ ରୂପେ ବ୍ୟବହାର କରା ଯାଇପାରେ। ତେଣୁ ସେ ବାରିପଦାରେ ପହଞ୍ଚିବାମାତ୍ରକେ ସ୍ଥାନୀୟ ହାଇସ୍କୁଲର ଛାତ୍ରମାନଙ୍କ ସହିତ ସଂପର୍କ ପ୍ରତିଷ୍ଠା କଲେ। ସୌଭାଗ୍ୟକୁ ତାଙ୍କପରି ସମାଜ ମଙ୍ଗଳ କାର୍ଯ୍ୟରେ ଆଗ୍ରହୀ ଶୈଳେନ୍ଦ୍ର ନାଥ ସରକାର ନାମକ ଜଣେ ଭଦ୍ରଲୋକ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ। ତେଣୁ ଗୋପବନ୍ଧୁ ଓ ଶୈଳେନ୍ଦ୍ର ଉଭୟ ମୟୂରଭଞ୍ଜର ଯୁବସଂପ୍ରଦାୟ ଭିତରେ ସମାଜ ସେବା ପାଇଁ ଆଗ୍ରହ ସୃଷ୍ଟି କରିବା ଲାଗି ସମବେତ ଉଦ୍ୟମ କଲେ। ଗୋପବନ୍ଧୁ ମୟୂରଭଞ୍ଜରେ ଥିବା ବେଳେ 1910 ମସିହା ମଇ ମାସରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ବିଶ୍ୱଭ୍ରମଣରେ ଯିବା ଲାଗି ନିଷ୍ପତ୍ତି କଲେ। ପ୍ରଜାମାନେ ରାଜାଙ୍କୁ ଏତେ

ଭଲ ପାଉଥିଲେ ଯେ ମହାରାଜା ସେମାନଙ୍କୁ ଛାଡି ବିଶ୍ୱ ଭ୍ରମଣରେ ଯା'ନ୍ତୁ ବୋଲି ସେମାନେ ଚାହୁଁ ନ ଥିଲେ, କିନ୍ତୁ ଗୋପବନ୍ଧୁଙ୍କ ମତ ଅଲଗା ଥିଲା। ସେ ଭାବୁଥିଲେ ଯେ ମହାରାଜା ଉନ୍ନତ ଦେଶଗୁଡ଼ିକ ଦେଖି ଆସିଲେ ନିଜ ରାଜ୍ୟରେ ସଂସ୍କାର କରିବାକୁ ମନ ବଳାଇବେ। ତେଣୁ ନିଜ ଯୋଜନାରେ ଆଗେଇ ଯିବାକୁ ସେ ମହାରାଜାଙ୍କୁ ଉତ୍ସାହିତ କରି ତାଙ୍କ ପାଇଁ ଗୋଟିଏ ବିରାଟ ବିଦାୟ ସଭାର ଆୟୋଜନ କଲେ। ମହାରାଜା ପରିଭ୍ରମଣରୁ ଫେରିବା ପରେ ମଧ୍ୟ ତାଙ୍କୁ ଅଭ୍ୟର୍ଥନା କରିବା ଲାଗି ସେହିପରି ଗୋଟିଏ ବିରାଟ ସଭା ଅନୁଷ୍ଠିତ ହୋଇଥିଲା।

ମହାରାଜା ନିଜ ସରକାରୀ ଓକିଲଙ୍କୁ ବିଶେଷ ସମ୍ମାନ କରୁଥିଲେ। ସେ ଗୋପବନ୍ଧୁଙ୍କ ସାଧୁତା, ଚରିତ୍ରବତ୍ତା, ଆତ୍ମତ୍ୟାଗ ଓ ଦେଶପ୍ରୀତିରେ ମୁଗ୍ଧ ହୋଇଥିଲେ। ସେ ଗୋପବନ୍ଧୁଙ୍କୁ ମୁହେଁ ମୁହେଁ କହିଲେ, ''ଏତେ ଦିନ ପରେ ମୁଁ ଆପଣଙ୍କ ପରି ଜଣେ ସଙ୍କୋଚ ପରାମର୍ଶଦାତା ପାଇ ଅତ୍ୟନ୍ତ ଆନନ୍ଦିତ। '' ସରକାରୀ ଓକିଲଙ୍କ ପ୍ରତି ସମ୍ମାନ ଓ ତାଙ୍କ ବିଜ୍ଞତାରେ ଅତୁଟ ଆସ୍ଥା ଥିବା ହେତୁ ମହାରାଜା ତାଙ୍କ ପରାମର୍ଶରେ ରାଜ୍ୟରେ ନାନା ରାଜନୈତିକ ସଂସ୍କାର ବିଧାନ କରିବା ଫଳରେ ବହୁକାଳ ପର୍ଯ୍ୟନ୍ତ ଓଡ଼ିଶାରେ ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ମୟୁରଭଞ୍ଜ ଆଦର୍ଶ ସ୍ଥାନୀୟ ବିବେଚିତ ହେଉଥିଲା। ବିଧାନମଣ୍ଡଳ ଓ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ଏବଂ ମହାରାଜା ଗୋପବନ୍ଧୁଙ୍କୁ ଉଭୟ ଅନୁଷ୍ଠାନର ସଭ୍ୟ ମନୋନୀତ କରିଥିଲେ। ଗୋପବନ୍ଧୁଙ୍କ ଯୋଗୁ ମୟୁରଭଞ୍ଜର ସରକାରୀ ବାତାବରଣ ପରିଷ୍କୃତ ହୋଇ ଯାଇଥିଲା ଏବଂ ନିର୍ଭୀକ ଭାବରେ ନିଜ କର୍ତ୍ତବ୍ୟ ସଂପାଦନ କରିବା ଲାଗି ଗୋପବନ୍ଧୁ କର୍ମଚାରୀମାନଙ୍କୁ ପ୍ରବର୍ତ୍ତାଇ ଥିଲେ। ସେ ସେମାନଙ୍କୁ ବୁଝାଇ ଦେଲେ ଯେ ଅନ୍ଧ ଭାବରେ ଆଦେଶ ମାନି ନେବା ବା ଲୋକଙ୍କ ଠାରୁ କ୍ରୀତଦାସ ସୁଲଭ ନମସ୍କାର ପାଇବା ଉତ୍ତମ ପ୍ରଶାସକର ଲକ୍ଷଣ ନୁହେଁ। ମହାରାଜାଙ୍କ ପରି ଜଣେ ବିଜ୍ଞ ନରପତିଙ୍କର ଭଲ କାମ ଚିହ୍ନି ପୁରସ୍କୃତ କରିବାର ଦକ୍ଷତା ଅଛି। ଅନ୍ୟ ପ୍ରକାର କହିଲେ ଗୋପବନ୍ଧୁଙ୍କ ଯୋଗୁ ଶାସନ ସଂପୂର୍ଣ୍ଣ ରୂପେ ବଦଳି ଗଲା ଓ ଲୋକ ଏକାବେଳେକେ ନବଜୀବନ ଅନୁଭବ କଲେ।

ମୟୁରଭଞ୍ଜର ଜୀବନ ପ୍ରବାହକୁ ଗୋପବନ୍ଧୁ ବିଶେଷ ପରିମାଣରେ ପ୍ରଭାବିତ କରି ପାରିଥିଲେ। ଓଡ଼ିଶାର ବୁଦ୍ଧିଜୀବୀମାନଙ୍କ ପାଇଁ ଗୋପବନ୍ଧୁ' ଏକ ପ୍ରକାର ଆକର୍ଷଣ କେନ୍ଦ୍ର ଥିଲେ। ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ରଙ୍କ ପରି ଯେଉଁମାନେ ପରବର୍ତ୍ତୀ ଜୀବନରେ ଖ୍ୟାତି ଲାଭ କରିଥିଲେ, ସେତେବେଳେ ସେମାନେ କଲିକତା ବିଶ୍ୱବିଦ୍ୟାଳୟର ଛାତ୍ର ଥାଇ ବାରିପଦାକୁ ବାରଂବାର ଆସି ଗୋପବନ୍ଧୁ ଆରମ୍ଭ କରିଥିବା ନାନାବିଧ କାର୍ଯ୍ୟକ୍ରମରେ ଭାଗ ନେଉଥିଲେ। ଯୁବ ଉତ୍କଳ ସଂଘ ଓ ସ୍ଥାନୀୟ ହାଇସ୍କୁଲ ଦ୍ୱାରା ଆୟୋଜିତ ଆଲୋଚନା ସଭାମାନଙ୍କରେ ଏହି ପରିଦର୍ଶୀ ପଣ୍ଡିତମାନେ ଜ୍ଞାନଗର୍ଭକ ଭାଷଣ ଦେବା ଫଳରେ ମୟୁରଭଞ୍ଜ ଓ ସେମାନଙ୍କ ମଧ୍ୟରେ ସୁଦୃଢ଼ ବନ୍ଧନ ସୃଷ୍ଟି ହୋଇଥିଲା। ତାଙ୍କ ପାଖକୁ ଆସି ନାନା ସମସ୍ୟା ଆଲୋଚନା

କରିବା ଲାଗି ଗୋପବନ୍ଧୁଙ୍କ ଦ୍ୱାର ଛାତ୍ରମାନଙ୍କ ପାଇଁ ସର୍ବଦା ଉନ୍ମୁକ୍ତ ଥିଲା। ସେ ନିଜ ଖର୍ଚ୍ଚରେ ଓ ସରକାରୀ ଖର୍ଚ୍ଚରେ ବହୁସଂଖ୍ୟକ ଦରିଦ୍ର ତଥା ମେଧାବୀ ପିଲାମାନଙ୍କ ପାଇଁ ଅଧ୍ୟୟନର ସୁବିଧା କରିଦେଇଥିଲେ। ସେ ବାରିପଦାରେ ଗୋଟିଏ ଅନାଥାଶ୍ରମ ସ୍ଥାପନ କରିଥିଲେ ଓ ଉଚିତ ମାର୍ଗରେ ଏହାର ବିକାଶ ସାଧନ ପାଇଁ ନିଜ ବାଲ୍ୟଗୁରୁ ପଣ୍ଡିତ ସଦାଶିବ ମିଶ୍ରଙ୍କୁ ଏହାର ତତ୍ତ୍ୱାବଧାରକ ହେବା ପାଇଁ ନିମନ୍ତ୍ରଣ କରିଥିଲେ। ନିମ୍ନଲିଖିତ ଘଟଣାରୁ ସତ୍ୟ ଓ ସାଧୁତା ପ୍ରତି ତାଙ୍କ ନିଷ୍ଠା ପ୍ରମାଣିତ ହୁଏ। ସେ ବାରିପଦାରେ ଥିବାବେଳେ ଚୋରୀ ଅଭିଯୋଗରେ ଅଭିଯୁକ୍ତ ଜଣେ ଡାକ ବଙ୍ଗଳା ଚୌକିଦାର ତାଙ୍କୁ ବିଶ୍ୱାସ କରି ସତକଥା କହିଲା। ସେ ସରକାରୀ ଓକିଲ ଥିଲେ ବି ଅଭିଯୋକ୍ତାଙ୍କ ଓକିଲ ନ ହୋଇ ଅଭିଯୁକ୍ତ ଚୌକିଦାର ତରଫରୁ ମାଗଣାରେ ଲଢିଲେ। ଏଥିପାଇଁ ଯେଉଁ ଦୃଢ ସାହସିକତା ଆବଶ୍ୟକ, ତାହା କେବଳ ଗୋପବନ୍ଧୁଙ୍କର ଥିଲା।

ଗୋପବନ୍ଧୁଙ୍କର ଗୋଟିଏ ପ୍ରିୟ ଆଦର୍ଶକୁ ବାହାନା କରି ପୁନର୍ବିବାହ ଲାଗି ଗୋପବନ୍ଧୁଙ୍କୁ ପ୍ରବର୍ତ୍ତାଇବା ଲାଗି ସେତେବେଳେ ଆଉଥରେ ଉଦ୍ୟମ ହୋଇଥିଲା। ଏହା ସର୍ବଜନ ବିଦିତ ଯେ ଜୀବନର ପ୍ରାକ୍‌କାଳରୁ ପଡ଼ୋଶୀ ପ୍ରଦେଶମାନଙ୍କରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ବିଷୟରେ ଗୋପବନ୍ଧୁ ସକ୍ରିୟ ଆଗ୍ରହ ଦେଖାଇ ଆସିଛନ୍ତି। ସିଂହଭୂମି ଓ ମେଦିନୀପୁର ଜିଲ୍ଲା ଦୁଇଟିରେ ବହୁ ସଂଖ୍ୟକ ଓଡ଼ିଆଭାଷୀ ଲୋକ ବାସ କରୁଥିଲେ। ଓଡ଼ିଶା ସହିତ ସଂପର୍କ ହରାଇ ସେମାନେ କ୍ରମେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ପାଶୋରି ଦେଉଥିଲେ। ଆଶଙ୍କା ହେଉଥିଲା ଯେ ସେଭଳି ପରିସ୍ଥିତି ଚାଲୁ ରହିଲେ ଭବିଷ୍ୟତରେ ଓଡ଼ିଶା ପ୍ରଦେଶ ଗଠିତ ହେବା ବେଳକୁ ସିଂହଭୂମି ଓ ମେଦିନୀପୁର ସେଥିରେ କଦାପି ଅନ୍ତର୍ଭୁକ୍ତ ହୋଇ ପାରିବ ନାହିଁ। ତେଣୁ ପଣ୍ଡିତ ଗୋପବନ୍ଧୁଙ୍କୁ ଧାରଣା ଦିଆଗଲା ଯେ ଉକ୍ତ ଅଂଚଳର ଲୋକମାନଙ୍କୁ ଓଡ଼ିଶା ସହିତ ବିବାହ ବନ୍ଧନରେ ଆବଦ୍ଧ କରିବାକୁ ପଡ଼ିବ। ଗୋପବନ୍ଧୁ ମେଦିନୀପୁର ବା ସିଂହଭୂମିର ଗୋଟିଏ ଝିଅକୁ ବିବାହ କରି ପଥ ପ୍ରଦର୍ଶକ ହେବା ଉଚିତ। ଜଣେ ବନ୍ଧୁ ମେଦିନୀପୁରର ଓକିଲ ରାଧାନାଥ ପତିଙ୍କ କନ୍ୟା ସହିତ ଗୋପବନ୍ଧୁଙ୍କ ବିବାହ ପ୍ରସ୍ତାବ ଚୂଡ଼ାନ୍ତ କରି ସାରିଥିଲେ। କିନ୍ତୁ ଗୋପବନ୍ଧୁ ଉକ୍ତ ପ୍ରସ୍ତାବକୁ ନାକଚ କରି ଦେଇଥିଲେ। ତାଙ୍କ ଯୁକ୍ତି ଥିଲା ଯେ ପ୍ରସ୍ତାବଟି ସ୍ପୃହଣୀୟ ହେଲେ ହେଁ ସେ ନିଜେ ବିବାହ କରି ପାରିବେ ନାହିଁ, କାରଣ ଗୋଟିଏ ନାରୀର ଜଣେ ପତି ହେଉଥିବା ବେଳେ ଜଣେ ପୁରୁଷର ଗୋଟିଏ ସ୍ତ୍ରୀ ରହିବା ଉଚିତ।

1912 ମସିହା ଫେବୃଆରୀ 22 ତାରିଖ ଦିନ ମହାରାଜା ଶ୍ରୀରାମଚନ୍ଦ୍ର ସ୍ୱର୍ଗାରୋହଣ କଲେ। ତାଂଙ୍କ ପୁତ୍ର ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେବ ନାବାଳକ ଥିବାରୁ ରାଜ୍ୟଟି କୋର୍ଟ ଅଫ ୱାର୍ଡ଼ସ୍ ଅଧିନରେ ରହିଲା। ଭାରତ ସରକାରଙ୍କ ଦେଶୀୟ ରାଜ୍ୟ ବିଭାଗ ଜଣେ ଇଉରୋପୀୟ ଲୋକଙ୍କୁ ରାଜ୍ୟର ତତ୍ତ୍ୱାବଧାରକ ନିଯୁକ୍ତି କଲେ ଏବଂ ସେ ଖର୍ଚ୍ଚ କାଟ ବ୍ୟବସ୍ଥା ରୂପେ ସରକାରୀ ଓକିଲ ପଦଟି ଉଠାଇ ଦେଲେ। କୁହାଯାଏ ଯେ

1922 ଜୁଲାଇ ମାସରେ ପଲିଟିକାଲ ଏଜେଣ୍ଟ କବ୍‌ଡ଼େନ ରାମ୍‌ସେ ନବଗଠିତ ବିହାର-ଓଡ଼ିଶାର ଛୋଟଲାଟଙ୍କ ଗସ୍ତ ବିଷୟରେ ବ୍ୟବସ୍ଥା କରିବା ଲାଗି ବାରିପଦା ଆସିଥିଲେ। ସ୍ଥାନୀୟ ହାଇସ୍କୁଲରୁ ବାଳିକା ସ୍କୁଲ ପର୍ଯ୍ୟନ୍ତ ତାଙ୍କ ସାଥିରେ ଯିବା ଲାଗି ସେ ସ୍ଥାନୀୟ ଶିକ୍ଷା ତତ୍ତ୍ୱାବଧାରକଙ୍କୁ ନିମନ୍ତ୍ରଣ କଲେ ଏବଂ ସେ ଜଣେ ଭାରତୀୟ ହୋଇ ଥିବାରୁ ତାଙ୍କୁ ନିଜ ପାଖରେ ନ ବସାଇ ଘୋଡ଼ାଗାଡ଼ିର କଚୁଆନ ପାଖରେ ବସିବାକୁ କହିଲେ। ଜଣେ ସହକର୍ମୀଙ୍କୁ ଏପରି ଅପମାନ ଦିଆ ଯାଇଥିବା ଶୁଣିପାରି ଗୋପବନ୍ଧୁ ପ୍ରତିବାଦରେ ସରକାରୀ ଓକିଲ ପଦରୁ ଇସ୍ତଫା ଦେଇଥିଲେ। ଜଣେ ଭାରତୀୟ ଅଫିସରଙ୍କୁ ଅଜାଣତରେ ଅପମାନିତ କରିଥିବାରୁ ପଲିଟିକାଲ ଏଜେଣ୍ଟ ଗୋପବନ୍ଧୁଙ୍କ ପାଖରେ କ୍ଷମା ପ୍ରାର୍ଥନା କରି ନିଜ ଇସ୍ତଫା ଫେରାଇ ନେବା ଲାଗି ତାଙ୍କୁ ଅନୁରୋଧ କଲେ, କିନ୍ତୁ ଗୋପବନ୍ଧୁ ମାନିଲେ ନାହିଁ। ଗୋଟିଏ ହୁକୁମନାମା ବଳରେ ସରକାରୀ ଓକିଲ ପଦ ଓଠାଇ ଦିଆ ଯାଇଥିଲା ସତ, କିନ୍ତୁ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ସ୍ୱର୍ଗାରୋହଣ ପରେ ଆରମ୍ଭ ହୋଇଥିବା ନୂଆ ଶାସନରେ ଗୋପବନ୍ଧୁଙ୍କ ପରି ଜଣେ ଆତ୍ମ-ସମ୍ମାନ ଥିବା ବ୍ୟକ୍ତିଙ୍କ ପକ୍ଷରେ ବାରିପଦାରେ ଚାକିରି କରିବା ସମ୍ଭବପର ନ ଥିଲା। ସେ 1912 ରେ ବାରିପଦା ଛାଡ଼ି କଟକକୁ ଫେରିଆସି ପୁଣି ଓକିଲାତି ଆରମ୍ଭ କଲେ।

# ଶିକ୍ଷାକ୍ଷେତ୍ରରେ ଅଭିନବ ପରୀକ୍ଷା

## ସାକ୍ଷୀଗୋପାଳ ବନବିଦ୍ୟାଳୟ ସ୍ଥାପନ

ଥରେ ନିଷ୍ପତ୍ତି ଗୃହୀତ ହେବାପରେ ତେଣିକି ବିଶଦ ବିବରଣୀ ସ୍ଥିର ହେବା କଥା। ପ୍ରଥମେ ପୁରୀ ଜିଲ୍ଲା ସତ୍ୟବାଦୀ ଥାନା ଅନ୍ତର୍ଗତ ଏକ ଅର୍ଦ୍ଧ-ସହରୀ ଅଞ୍ଚଳ ସାକ୍ଷୀଗୋପାଳ କଥା କେହି ଚିନ୍ତା କରି ନ ଥିଲେ। ଇଂରେଜ-ଶାସିତ ଓଡ଼ିଶା ଓ ଦେଶୀୟ ରାଜ୍ୟଗୁଡ଼ିକୁ ମିଶାଇ ପ୍ରାକୃତିକ ଓଡ଼ିଶା ପ୍ରଦେଶ ବୋଲି କୁହାଯାଏ। ଗୋପବନ୍ଧୁଙ୍କ ପ୍ରିୟ ଅନୁଷ୍ଠାନ ପାଇଁ ସ୍ଥାନ ନିରୂପଣ କରିବା ଲାଗି ପ୍ରାକୃତିକ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଲୋକ ଗଲେ। ଶେଷରେ ରାୟ ବାହାଦୁର ମଧୁସୂଦନ ରାଓଙ୍କ ସୂଚନା ଅନୁସାରେ ସାକ୍ଷୀଗୋପାଳ ବକୁଳ ବନରେ ଏହି ଶିକ୍ଷାଗତ ଅଭିନବ ପରୀକ୍ଷଣ ଲାଗି ସ୍ଥାନ ନିରୂପିତ ହେଲା।

ବହୁ ଦିଗରୁ ସତ୍ୟବାଦୀ ସୁବିଧା ଜନକ ବିବେଚିତ ହେଲା, ଏହା କେବଳ ଗୋଟିଏ ଥାନାର ମୁଖ୍ୟାଳୟ ନ ଥିଲା, ସାରା ଭାରତରୁ ଯାତ୍ରୀମାନେ ଏଠାକୁ ତୀର୍ଥ କରି ଆସନ୍ତି। ପୁରୀ-ଖୋର୍ଦ୍ଧା ଶାଖା ରେଳପଥର ସାକ୍ଷୀଗୋପାଳ ରେଳଷ୍ଟେସନରୁ ଏହା ମାତ୍ର ଦଶ ମିନିଟର ପାଦଚଲା ବାଟ। ଏହା ମଧ୍ୟ ଚାରିପାଖରେ ଥିବା କୁସଂସ୍କାର ଗ୍ରସ୍ତ ଓ ଜାତ୍ୟାଭିମାନୀ ସନାତନୀ ବ୍ରାହ୍ମଣମାନେ ବାସ କରୁଥିବା ଶାସନଗୁଡ଼ିକର କେନ୍ଦ୍ରସ୍ଥଳ।

ସାକ୍ଷୀଗୋପାଳକୁ ବାଛିବାରେ ଆଉ ଗୋଟିଏ ଅଧିକା କାରଣ ଥିଲା। ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା ହରିହର ଦାଶଙ୍କ ଜନ୍ମସ୍ଥାନ ସାକ୍ଷୀଗୋପାଳ ନିକଟବର୍ତ୍ତୀ ଶ୍ରୀରାମଚନ୍ଦ୍ରପୁର। ଏହି ହରିହର ଦାଶଙ୍କ ସହିତ ଗୋପବନ୍ଧୁ ଓ ମଧୁସୂଦନ ରାଓ ଉଭୟଙ୍କର ଘନିଷ୍ଠତା ଥିଲା। ସେ ମଧ୍ୟ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପିତୃବ୍ୟ ବା କକେଇ। ହରିହର ପାଶ୍ଚାତ୍ୟ ଶିକ୍ଷା ଲାଭ କରିଥିଲେ ଏବଂ ବହୁ ଇଉରୋପୀୟ ଅଫିସରମାନଙ୍କ ସହିତ ତାଙ୍କର ନିବିଡ଼ ବନ୍ଧୁତା ଥିଲା। ତାଙ୍କର ଏହି କୁସଂସ୍କାର ବିହୀନ କାର୍ଯ୍ୟ ଯୋଗୁ ବ୍ରାହ୍ମଣମାନଙ୍କ ମଧ୍ୟରେ ତୀବ୍ର ଆଲୋଡ଼ନ ସୃଷ୍ଟି ହୋଇଥିଲା। ନିଜ ସଂପ୍ରଦାୟକୁ ପୁନର୍ଜୀବନ ଦେବା ଲାଗି ହରିହର ଯେଉଁ ସବୁ ପ୍ରତିବନ୍ଧକ ଅତିକ୍ରମ କରିଥିଲେ, ତାହା ଗୋପବନ୍ଧୁଙ୍କ ଚକ୍ଷୁରେ ତାଙ୍କୁ ଭକ୍ତି ଭାଜନ କରିଥିଲା। ମଧୁସୂଦନ ରାଓ ସାକ୍ଷୀଗୋପାଳ ବିଷୟରେ ସୂଚନା ଦେବା ମାତ୍ରକେ ଗୋପବନ୍ଧୁ ଏହି ମହାପୁରୁଷଙ୍କ ସ୍ମୃତି ଚିରସ୍ଥାୟୀ କରି ତାଙ୍କ ଆଦର୍ଶକୁ ରୂପାୟିତ କରିବା ଲାଗି ଆଗ୍ରହରେ ଏହି ପ୍ରସ୍ତାବକୁ ଗ୍ରହଣ କରିନେଲେ।

ସେତିକିବେଳେ ଗୋପବନ୍ଧୁଙ୍କର ଜଣେ ସହପାଠୀ ଶ୍ରୀରାମଚନ୍ଦ୍ରପୁର ନିବାସୀ ନବନିଯୁକ୍ତ ଡେପୁଟି କଲେକ୍ଟର ଗୋପୀନାଥ ଦାଶ ତାଙ୍କ ଗାଁରେ ଗୋଟିଏ ମଧ୍ୟଭର୍ଣ୍ଣାକୁଲର ସ୍କୁଲ ବସାଇବା ଉଦ୍ୟମରେ ଥିଲେ। ଆଖପାଖରେ ଦୁଇଟି ମଧ୍ୟଭର୍ଣ୍ଣାକୁଲର ସ୍କୁଲ ବନ୍ଦ ହୋଇ ଯାଇଥିବାରୁ ଏବଂ ଲୋକମାନେ ମଧ୍ୟ ଇଂରାଜୀ ସ୍କୁଲରେ ପଢ଼ିବାକୁ ଚାହୁଁ ଥିବାରୁ ଗୋପବନ୍ଧୁ ତାଙ୍କୁ ପ୍ରବର୍ତ୍ତାଇଲେ ଯେ ସେ ନିଜେ ଦେଉଥିବା ଟଙ୍କାକୁ ଚାନ୍ଦା ସ୍ୱରୂପ ଦେଇ ସାକ୍ଷୀଗୋପାଳ ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କାର୍ଯ୍ୟରେ ସହାୟତା କରନ୍ତୁ। ଆଗରୁ କୁହାହୋଇଛି ଗୋପବନ୍ଧୁ ବାରିପଦା ଯିବା ଆଗରୁ ୧୨ ଜଣ ଛାତ୍ରଙ୍କୁ ନେଇ ୧୨୦୨ ଅଗଷ୍ଟ ବାର ତାରିଖ ଦିନ ସତ୍ୟବାଦୀ ମଧ୍ୟ ଇଂରାଜୀ ବିଦ୍ୟାଳୟ ଆରମ୍ଭ କରିଥିଲେ। ଓଡ଼ିଆ ଜାତୀୟତା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ହୋଇଥିବା ସତ୍ୟବାଦୀ ବନ ବିଦ୍ୟାଳୟର ଏହା ହିଁ ଅଙ୍କୁର ରୂପେ କାର୍ଯ୍ୟ କରିଥିଲା।

ସେ ସ୍ଥାନରେ ସ୍କୁଲ ହେବା ପାଇଁ କୌଣସି କୋଠା ଘର ନ ଥିବାରୁ ମନ୍ଦିର ବଙ୍ଗଳାରେ ସ୍କୁଲ ଆରମ୍ଭ ହୋଇଥିଲା। ଗୋପବନ୍ଧୁ ସ୍କୁଲର ସଂପାଦକ ହୋଇଥିଲେ ଓ ସେହି ଭାବରେ ମନ୍ଦିରର ଉତ୍ତର-ପଶ୍ଚିମ ଦିଗରେ ଥିବା ଦୁଇ ଏକର ଜମିକୁ ସ୍କୁଲ ନାମରେ କବୁଲିୟତ କରିଦେବା ଲାଗି ମନ୍ଦିର ପରିଚାଳନା ସମିତିକୁ ଅନୁରୋଧ କଲେ। ଏହି ଜମିରେ ଘଞ୍ଚ ବକୁଳ ବନ ଥିବାରୁ ପ୍ରାକୃତିକ ପରିବେଶ ଭିତରେ ସ୍କୁଲ କାର୍ଯ୍ୟ ଚଳାଇବା ଲାଗି ଗୋପବନ୍ଧୁ ଚିନ୍ତା କରିଥିଲେ। ସେ ଯାହାହେଉ, ପାଗର ଅନିଶ୍ଚୟତା ଯୋଗୁ ଏହି ଉଚ୍ଚାକାଙ୍‌କ୍ଷୀ ପ୍ରକଳ୍ପ ବର୍ଜିତ ହୋଇ ଗୋଟିଏ ଘର ତିଆରି କରିବା କଥା ହେଲା। ଗୋପବନ୍ଧୁ ବନ୍ଧୁମାନଙ୍କୁ ସାଙ୍ଗରେ ନେଇ ଗାଁ ମାନଙ୍କରୁ ଚାନ୍ଦା ଆଦାୟ କରିଥିଲେ। ପରିଚାଳନା ଖର୍ଚ୍ଚ କମାଇବା ଲାଗି ସେ ସ୍ଥିର କଲେ ଯେ ବର୍ଷା ଋତୁ ଛଡ଼ା ସବୁ ସମୟରେ ସ୍କୁଲ କାର୍ଯ୍ୟ ବାହାରେ ହେବ ଏବଂ ବର୍ଷା ବେଳେ ପାଖ ଘରେ ପାଠପଢ଼ା ହେବ। ଶିକ୍ଷା ବିଭାଗ ମାଇନର ସ୍କୁଲକୁ ସ୍ୱୀକୃତି ଦେଲେ ଏବଂ ୧୯୧୧ ଅକ୍ଟୋବର ଏଗାର ତାରିଖ ଦିନ ପଣ୍ଡିତ ନୀଳକଣ୍ଠ ଦାଶ ସ୍କୁଲରେ ଶିକ୍ଷକ ରୂପେ ଯୋଗ ଦେବା ପରେ ଏହାକୁ ହାଇସ୍କୁଲରେ ପରିଣତ କରିବା କଥା ଉଠିଲା।୧୯୧୨ ଜାନୁଆରୀ ମାସରେ ଚତୁର୍ଥ ଶ୍ରେଣୀ (ବର୍ତ୍ତମାନ ଅଷ୍ଟମ ଶ୍ରେଣୀ) ଆରମ୍ଭ ହେଲା। ଏହା ହିଁ ଥିଲା ଗୋପବନ୍ଧୁଙ୍କ ପରିକଳ୍ପିତ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଅୟମାରମ୍ଭ।

### ବିଦ୍ୟାଳୟର ଲକ୍ଷ୍ୟ

ସ୍କୁଲ ଆରମ୍ଭ ହେବାବେଳେ ଗୋପବନ୍ଧୁ ଯେଉଁ ଘୋଷଣା କରିଥିଲେ, ସେଥିରୁ ଏହାର ଲକ୍ଷ୍ୟ ସୂଚିତ ହୁଏ। ଆଗରୁ କୁହାଯାଇଛି ଯେ ଦାକ୍ଷିଣାତ୍ୟ ଶିକ୍ଷା ସମିତି ଆଦର୍ଶରେ ସେ ସାର୍ବଜନୀନ ଶିକ୍ଷା ସଂଘ ନାମକ ଗୋଟିଏ ଅନୁଷ୍ଠାନ ଗଢ଼ି, ଘୋଷଣା କରିଥିଲେ, ‘‘ସମସ୍ତଙ୍କର ଶିକ୍ଷା ଲାଭ କରିବା ଲାଗି ସମାନ ଅଧିକାର ଅଛି ବୋଲି ଏହି ସଂଘର ଉଦ୍ୟୋକ୍ତାମାନେ ବିଶ୍ୱାସ କରନ୍ତି। ସୂର୍ଯ୍ୟକିରଣ ଓ ଚନ୍ଦ୍ରକିରଣରେ ସମାନ ଭାଗ ଥିବା ପରି ଏବଂ ସବୁ ଯୁଗରେ ମାନବ ସମାଜକୁ ସମାନ ଭାବରେ

ଧର୍ମ ଶିକ୍ଷା ଦିଆଯାଉଥିବା ପରି ସମସ୍ତଙ୍କୁ ସମାନ ଭାବରେ ଶିକ୍ଷା ବା ମାନସିକ ଆଲୋକ ଦିଆଯିବା ଉଚିତ। ଶିକ୍ଷାର ମାନକୁ ଅବନତ ନ କରି ମଧ୍ୟ ନାନା ଉପାୟରେ ଶିକ୍ଷାଗତ ବ୍ୟୟକୁ କମାଇ ହେବ; ସେହି ହେତୁ ପ୍ରାଚୀନ ଗୁରୁକୁଳ ପଦ୍ଧତିରେ ଗୋଟିଏ ବନ ବିଦ୍ୟାଳୟର ପ୍ରସ୍ତାବ କରାଯାଇଛି। ଏହି ଅନୁଷ୍ଠାନରେ ଛାତ୍ର ଦେୟ ବେତନ ଊଣା ରହିବ ଏବଂ ସେମାନେ ସ୍କୁଲ ଛାତ୍ରାବାସରେ ରହି ସରଳ ଓ ବିଳାସହୀନ ଜୀବନ ଯାପନ କରିବେ। କେବଳ କୋଠା, ଚୌକୀ ଓ ଟେବୁଲକୁ ନେଇ ଗୋଟିଏ ବିଦ୍ୟାଳୟ ହୁଏ ନାହିଁ। ସୁଶିକ୍ଷିତ, ନିଷ୍ଠାପର ଓ ଆଦର୍ଶବାଦୀ ଶିକ୍ଷକ ମଧ୍ୟ ଆବଶ୍ୟକ। ଜୀବନ ସଂଗ୍ରାମର ମୁକାବିଲା କରିବା ଲାଗି ଆଧୁନିକ ଶିକ୍ଷା ପଦ୍ଧତି ଦେଶର ଯୁବକମାନଙ୍କୁ ତାଲିମ ଦେଇ ପାରୁ ନାହିଁ। ଚୌକୀ ଓ ଟେବୁଲ ଥାଇ ଯେଉଁ କାମ କରିହେବ, ତା ଛଡ଼ା ସେମାନେ ଆଉ କିଛି କରିବାକୁ ସମର୍ଥ ହେଉନାହାନ୍ତି। ଜୀବିକା ନିର୍ବାହ କରିବା ପାଇଁ ସେମାନଙ୍କୁ କେତେ ଗୋଟି ଧନ୍ଦା ଶିକ୍ଷା ଦିଆଯିବା ଉଚିତ, ତେଣୁ ସେମାନଙ୍କୁ ଶାରୀରିକ ବ୍ୟାୟାମ ସହିତ ଶିଳ୍ପ ଓ କୃଷି ଶିକ୍ଷା ଦିଆଯିବ। ଧର୍ମ ଓ ନୀତିଶିକ୍ଷା ମଧ୍ୟ ଅତ୍ୟାବଶ୍ୟକ, କାରଣ ବାଣିଜ୍ୟ ଓ କାରବାର ଭଳି ପାର୍ଥିବ କାର୍ଯ୍ୟ ପାଇଁ ନୈତିକତାର ମୂଲ୍ୟ ଅଛି।

''ଆଦର୍ଶ, ଆକାର ଓ ପରିଚାଳନା ବିଷୟରେ ସତ୍ୟବାଦୀ ବିଦ୍ୟାଳୟ ଗୋଟିଏ ଆଞ୍ଚଳିକ, ସାଂପ୍ରଦାୟିକ ବା ଗୋଷ୍ଠୀଗତ ଅନୁଷ୍ଠାନ ହେବ ନାହିଁ। ଜନସାଧାରଣଙ୍କୁ ସାଧାରଣ ଶିକ୍ଷା ଦେବା ଏହାର ମୌଳିକ ଆଦର୍ଶ। ବହୁକାଳ ହେଲା ଆମେ ଯେଉଁ ସର୍ବତୋମୁଖୀ ଶିକ୍ଷାଗତ ଆନ୍ଦୋଳନର ପରିକଳ୍ପନା କରି ଆସିଛୁ, ଏହା ତାହାର ଆରମ୍ଭ ମାତ୍ର। ଏହି ଛାଞ୍ଚରେ କେତେଗୋଟି ଅନୁଷ୍ଠାନ ଗଢ଼ିବା ଆମର ଲକ୍ଷ୍ୟ। ଏହା ତନ୍ମଧ୍ୟରୁ ଗୋଟିଏ, ମାତ୍ର କାଳକ୍ରମେ ପ୍ରଦେଶ ସାରା ଏହିପରି ଅନୁଷ୍ଠାନ ଛାଇ ହୋଇଯିବ। ଏହି ଅନୁଷ୍ଠାନ ଗୁଡ଼ିକରେ ଧନ, ଶିକ୍ଷା ଓ ଚରିତ୍ରର ସମନ୍ୱୟ ସାଧିତ ହେବ; ଏହା ହିଁ ସାର୍ବଜନୀନ ଶିକ୍ଷାସଂଘର ଲକ୍ଷ୍ୟ।''

## ପ୍ରତିକ୍ରିୟାଶୀଳ ଲୋକଙ୍କ ବିରୋଧ

ବିଦ୍ୟାଳୟଟିର ବିକାଶ ନିର୍ବିଘ୍ନ ହୋଇ ନ ଥିଲା। ଏହି ପ୍ରଗତିବାଦୀ ଅନୁଷ୍ଠାନରେ ମିଳିତ ଜୀବନ ଏବଂ ନାନା ଜାତି ଓ ସଂପ୍ରଦାୟର ଛାତ୍ରମାନଙ୍କୁ ଏକତ୍ର ପଙ୍କ୍ତି ଭୋଜନ ଆଦି କେତେ ଗୋଟି ସଂସ୍କାର ମୂଳକ ବ୍ୟବସ୍ଥା ହୋଇଥିବାରୁ ସ୍ଥାନୀୟ ବ୍ରାହ୍ମଣମାନଙ୍କ ମଧ୍ୟରେ ଚହଳ ପଡ଼ିଗଲା। ସେମାନେ ଆଶଙ୍କା କଲେ ଯେ ଏହି ବିଦ୍ୟାଳୟଟି ସ୍ଥାୟୀ ଭାବରେ ରହିଲେ ହିନ୍ଦୁଧର୍ମ, ବିଶେଷରେ ବ୍ରାହ୍ମଣ ସଂପ୍ରଦାୟର ମୌଳିକତା ଓ ବୈଶିଷ୍ଟ୍ୟକୁ ଧ୍ୱଂସ କରିଦେବ। ତେଣୁ ଏହି ଅନୁଷ୍ଠାନକୁ ଭାଙ୍ଗି ଦେବାକୁ ସେମାନେ ବଦ୍ଧପରିକର ହେଲେ। 1912 ମସିହା ମାର୍ଚ୍ଚ 22 ତାରିଖ ରାତିରେ ସେମାନେ ସ୍କୁଲର ଚାଳ ଘରଟିକୁ ପୋଡ଼ି ଦେଲେ। ଏଥି ଯୋଗୁ ପ୍ରାୟ ପାଞ୍ଚ ହଜାର ଟଙ୍କା ମୂଲ୍ୟର କ୍ଷତି ହେଲା ସତ୍ୟ; ତା ଛଡ଼ା ସ୍କୁଲ ପାଠାଗାର ପାଇଁ ସଂଗୃହୀତ କେତେ ଗୋଟି ଦୁଷ୍ପ୍ରାପ୍ୟ ଓ ମୂଲ୍ୟବାନ ପୁସ୍ତକ ପୋଡ଼ି ପାଉଁଶ ହୋଇଗଲା।

ଏହି କ୍ଷତି ଯୋଗୁ ଉଦ୍ୟୋକ୍ତାମାନେ ବିଚଳିତ ହୋଇପଡ଼ିଲେ. ଏପରି ପରିସ୍ଥିତିରେ କଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ।

ଗୋପବନ୍ଧୁ ଓ ନୀଳକଣ୍ଠ ଉଭୟ ଅପ୍ରତିହତ ବ୍ୟକ୍ତି ଥିଲେ. କୌଣସି ପ୍ରକାର ବାଧାବିଘ୍ନ ସେମାନଙ୍କ ପକ୍ଷରେ ଅଲଂଘନୀୟ ନ ଥିଲା। ଗୋପବନ୍ଧୁ ବାରିପଦା ଠାରେ ଏ ସଂବାଦ ପାଇବା ମାତ୍ରକେ ସହକର୍ମୀମାନଙ୍କ ସହିତ ପରାମର୍ଶ କରିବା ପାଇଁ ସତ୍ୟବାଦୀକୁ ଦଉଡ଼ି ଆସିଲେ। ସେ ଏଥିରେ ଭାଙ୍ଗି ପଡ଼ି ନଥିଲେ, ବରଂ ବନ୍ଧୁମାନଙ୍କୁ କହିଲେ, "ଚିନ୍ତା କରୁଛ କାହିଁକି? ବୋଧହୁଏ ଭଗବାନ ଚାହାନ୍ତି ଯେ ସ୍କୁଲଟି ଚାଳ ଘରେ ନ ଚାଲୁ, ଏହାର ଗୋଟିଏ ପକ୍କାଘର ହେଉ "। ଏହି ଦୃଢ଼ତା ସହିତ ସ୍କୁଲର ବଡ଼ ବଡ଼ ଉଦ୍ୟୋକ୍ତାମାନେ ପକ୍କାଘର ପାଇଁ ଚାନ୍ଦା ସଂଗ୍ରହ ଉଦ୍ଦେଶ୍ୟରେ ନିଜ ଦସ୍ତଖତରେ ଗୋଟିଏ ନିବେଦନ ପ୍ରକାଶ କଲେ। ଗଡ଼ଜାତ ସମେତ ସମଗ୍ର ଓଡ଼ିଶାରୁ ଚାନ୍ଦା ବୋହି ଆସିଲା। ଶିକ୍ଷକ ଓ ଉଦ୍ୟୋକ୍ତାମାନଙ୍କ ପରି ଛାତ୍ରମାନେ ମଧ୍ୟ ଦୃଢ଼ମନା ଥିଲେ। ଏହି ଦୁର୍ଘଟଣା ହେତୁ ସେମାନେ ଗୋଟିଏ ଦିନ ପାଇଁ ବି ସ୍କୁଲକାର୍ଯ୍ୟ ବନ୍ଦ କରାଇ ଦେଲେ ନାହିଁ। ଘର ପୋଡ଼ି ଯିବାର ଛ' ଘଣ୍ଟା ଭିତରେ ସେମାନେ ପାଖ ଗାଁମାନଙ୍କରୁ ନଡ଼ିଆ ବାହୁଙ୍ଗା ମାଗି ଆଣି ଛାମୁଣ୍ଡିଆ ତିଆରି କରିଦେଲେ। ଅଳ୍ପ ଦିନ ମଧ୍ୟରେ ବର୍ଷା ଋତୁ ପାଇଁ କ ଓ ଖ ଧାଡ଼ିବୋଲି କୁହାଯାଉଥିବା ଦୁଇଧାଡ଼ି ପକ୍କା ଘର ପରସ୍ପର ମୁହାଁମୁହିଁ ହୋଇ ଠିଆ ହୋଇଗଲା। 1913 ବେଳକୁ ପକ୍କା ଘର ତିଆରି ହୋଇଯିବା ପରେ ଆଗରୁ ତିଆରି ହୋଇଥିବା ଏହି ଦୁଇଧାଡ଼ି ଇଟା ଘରେ ଛାତ୍ରାବାସ ହେଲା।

### ଉନ୍ମୁକ୍ତ ବିଦ୍ୟାଳୟ

ଘରର ଅତ୍ୟାବଶ୍ୟକତା ବିଦ୍ୟାଳୟଟିକୁ ଅଭିନବ ଛାଞ୍ଚରେ ପକାଇଲା। ଘର ପୋଡ଼ି ପରେ ଗୋପବନ୍ଧୁ ବକୁଳ ବନରେ ବୁଲି ଦେଖିଲେ, ସ୍ଥାୟୀ ଘର ତିଆରି ହେବା ପର୍ଯ୍ୟନ୍ତ ଗଛ ତଳେ ପାଠପଢ଼ା ହୋଇ ପାରିବ କି ନାହିଁ। ସେ ଗୋଟିଏ ଛୋଟ ଜାଗା ଦେଖିଲେ, ଯାହା କି ଘଞ୍ଚ ଭାବରେ ବର, ଅଶ୍ୱତ୍ଥ, ଛୁରୀଅନା ଓ ବକୁଳଗଛ ଡାଳରେ ଆଚ୍ଛାଦିତ ହୋଇଥିଲା। ସବୁବେଳେ ପତ୍ର ରହୁଥିବା ଏହି ଗଛଗୁଡ଼ିକ ଯୋଗୁ ସୂର୍ଯ୍ୟକିରଣ ପଡ଼େ ନାହିଁ। ଏହି ଅଂଶଟିକୁ "ଗୁପ୍ତ ବୃନ୍ଦାବନ" କୁହାଯାଏ। ଗୋପବନ୍ଧୁ ଓ ନୀଳକଣ୍ଠ ଏହାକୁ କେତେ ଭାଗରେ ବିଭକ୍ତ କରି ଦେଇ ପ୍ରତ୍ୟେକ ବିଭାଗରେ ଇଟା ଓ ସିମେଣ୍ଟର ଗୋଟିଏ ଲେଖାଁଏ ବେଦୀ ତିଆରି କରାଇ ଦେଲେ। ଶିକ୍ଷକ ବେଦୀର ଉପରେ ବସିଲେ ଓ କଳାପଟା ଗଛରେ ଟଙ୍ଗା ହେଲା ଏବଂ ଛାତ୍ରମାନେ ନଡ଼ିଆ ପତ୍ର ଛାଞ୍ଚ ତିଆରି କରି ବସିଲେ। ଏହି ଅଂଶର ଉଭୟ ପାଖରେ ଆଉ ଦୁଇଟି ଛାଇ ଜାଗା ଥିଲା। ଗୋଟିଏ ହେଲା, ଶିକ୍ଷକମାନଙ୍କ ସାଧାରଣ ପ୍ରକୋଷ୍ଠ ଓ ଅପରଟି ଛାତ୍ରମାନଙ୍କ ସଭା ଘର ରୂପେ ବ୍ୟବହୃତ ହେଲା।

### ପୁନଃନିର୍ମିତ ବିଦ୍ୟାଳୟ

1913 ଆରମ୍ଭରେ ନୂଆ ଘର ପାଇଁ ଭିତ୍ତି ପ୍ରସ୍ତର ସ୍ଥାପିତ ହେଲା। ଭିତ୍ତି ପ୍ରସ୍ତର ସ୍ଥାପିତ ହେଉଥିବା ଖାତ ଭିତରେ ସେତେବେଳେ ପ୍ରଚଳିତ ଟଙ୍କା, ଅଧୁଲି,

ସୁଉକି, ଦୋଅଣି ଓ ଅଣିକିଆ ମୁଦ୍ରା ଏବଂ ବିଦ୍ୟାଳୟର ଶିକ୍ଷକମାନଙ୍କ ନାମ ଲେଖାଥିବା ଖଣ୍ଡିଏ କାଗଜ ବୋତଲରେ ପୂରା ହୋଇ ପୋତି ଦିଆଗଲା। ଗୋପବନ୍ଧୁ, ନୀଳକଣ୍ଠ ଓ ଅନ୍ୟାନ୍ୟ ସହକର୍ମୀମାନେ ଏହି ଅବକାଶରେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ଏବଂ ଛାତ୍ରମାନେ ଉଦ୍ୟୋକ୍ତାମାନଙ୍କ ଉଦ୍ୟମର ପରିସମାପ୍ତି ସୂଚକ ଏହି ଭିତ୍ତି ପ୍ରସ୍ତର ଦେଖି ଉତ୍ସାହିତ ହୋଇଥିଲେ। ବର୍ଷକରୁ ଊଣା ସମୟ ଭିତରେ କୋଠାଟି ତିଆରି ହୋଇଗଲା ଓ 1914 ବେଳକୁ ବିଦ୍ୟାଳୟଟି ସ୍ୱୟଂ ସଂପୂର୍ଣ୍ଣ ହେଲା।

ଏହି ଘର ପୋଡ଼ି ଦୁର୍ଘଟଣା ସ୍କୁଲର ପ୍ରଗତିକୁ ବ୍ୟାହତ କରି ପାରି ନ ଥିଲା। ନୀଳଗିରି ଚାକିରୀ ଛାଡ଼ିବା ପରେ ଆଚାର୍ଯ୍ୟ ହରିହର ଦାଶ କଟକ ପ୍ୟାରୀମୋହନ ଏକାଡ଼େମୀରେ କାର୍ଯ୍ୟ କରୁଥିଲେ; ସେ 1912ରେ ସେଠା ଚାକିରି ଛାଡ଼ି ଏହି ସ୍କୁଲରେ ଯୋଗଦେଲେ। 1913 ରେ ତୃତୀୟ ଓ ଦ୍ୱିତୀୟ ଶ୍ରେଣୀ (ବର୍ତ୍ତମାନ ନବମ ଓ ଦଶମ ଶ୍ରେଣୀ) ଖୋଲିଲା ଏବଂ ସେହି ବର୍ଷ କଲିକତା ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ସ୍ନାତକୋତ୍ତର ଉପାଧି ଲାଭ କରିବା ପରେ ପଣ୍ଡିତ ଗୋଦାବରୀଶ ମିଶ୍ର ସ୍କୁଲର ଶିକ୍ଷକ ରୂପେ ଆସିଲେ। ଉଭୟ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ପ୍ରଦେଶରେ ସବୁଠାରୁ ବେଶୀ ଉଚ୍ଚଶିକ୍ଷିତ ଥିଲେ। ସେମାନଙ୍କୁ ଯେଉଁ ଚାକିରୀ ସବୁ ଯଚା ଯାଇଥିଲା, ସେଗୁଡ଼ିକୁ ଗ୍ରହଣ କରିଥିଲେ ବ୍ରିଟିଶ ସରକାର ଅଧୀନରେ ଉଚ୍ଚ ପଦାଧିଷ୍ଠିତ ସରକାରୀ କର୍ମଚାରୀ ରୂପେ ନିଜ ପ୍ରତିଭାର ପରିଚୟ ଦେଇ ପାରିଥାନ୍ତେ, କିନ୍ତୁ ସେମାନଙ୍କ ହୃଦୟରେ ପଣ୍ଡିତ ଗୋପବନ୍ଧୁ ଦେଶପ୍ରୀତିର ଯେଉଁ ସ୍ଫୁଲିଙ୍ଗ ଜଳାଇ ଦେଇଥିଲେ, ତାହାରି ପ୍ରଭାବରେ ସେମାନେ ମାତୃଭୂମିର ଆହ୍ୱାନକୁ ଉପେକ୍ଷା କରି ଧନ ଓ କ୍ଷମତାର ଅନ୍ୱେଷଣରେ ଯାଇ ପାରିଲେ ନାହିଁ। ଏପରି ମନୋବୃତ୍ତି ଓ ଏଭଳି ଉଚ୍ଚଶିକ୍ଷା ଥିବା ଶିକ୍ଷକ ଥିଲେ ଯେ କୌଣସି ଶିକ୍ଷାନୁଷ୍ଠାନ ଦ୍ରୁତ ପ୍ରଗତି ହାସଲ କରି ପାରନ୍ତା; ତେଣୁ ଆଦର୍ଶ ଯୋଗୁ ଅସାଧାରଣ ବିବେଚିତ ଏହି ସତ୍ୟବାଦୀ ବିଦ୍ୟାଳୟ କ୍ରମାନ୍ନତ ଓଡ଼ିଶାରେ ଶିକ୍ଷାଲୋକ ବିକୀରଣର କେନ୍ଦ୍ର ହୋଇଥିବା ସ୍ୱାଭାବିକ। ଏହି ବିଦ୍ୟାଳୟର ସୁଶିକ୍ଷା ଓ ସୁନାମରେ ଆକୃଷ୍ଟ ହୋଇ ଓଡ଼ିଶାର ଚାରିଆଡୁ ଛାତ୍ରମାନେ ଏଠାକୁ ଆସିଲେ। ସାକ୍ଷୀଗୋପାଳ ବିଦ୍ୟାଳୟ କେବଳ ଗୋଟିଏ ପାରଂପାରିକ ଉଚ୍ଚ ବିଦ୍ୟାଳୟ ନ ଥିଲା, ଏହା ଓଡ଼ିଶାର ଚଉଦିଗରେ ଆଦର୍ଶବାଦ, ଦେଶପ୍ରୀତି, ଜାତୀୟତା ଓ ମାନସିକ ଆଲୋକ ବିଛାଇ ପାରିଥିଲା।

# ସତ୍ୟବାଦୀ ଶିକ୍ଷାପଦ୍ଧତି

## ଆଦର୍ଶ

ଓଡ଼ିଶାର ଯୁବଶକ୍ତିର ଉପଯୋଗୀ ଶିକ୍ଷାପଦ୍ଧତି ସମ୍ବନ୍ଧରେ ଗୋପବନ୍ଧୁଙ୍କର କେତେଗୋଟି ଅଭିନବ ଧାରଣା ଥିଲା। ସେ ଗୋଟିଏ ସାଧାରଣ ମାଇନର ସ୍କୁଲ ବା ହାଇସ୍କୁଲ ବସାଇବାକୁ ଚାହୁଁ ନ ଥିଲେ। ତାଙ୍କ ଆଦର୍ଶ ଆହୁରି ଉଚ୍ଚରେ ହୋଇ ଥିବାରୁ ସେ ଗୋଟିଏ ବହୁମୁଖୀ ଶିକ୍ଷାକେନ୍ଦ୍ର ଚାହୁଁଥିଲେ ଯେଉଁଠାରେ ପାଠ୍ୟକ୍ରମ ଅନୁସାରେ ଶିକ୍ଷା ଦିଆଯିବ, ଯଦ୍ୱାରା ସେମାନେ ପରବର୍ତ୍ତୀ ଜୀବନରେ ସ୍ୱାଧୀନ ଭାବରେ ଜୀବିକା ଅର୍ଜନ କରି ପାରିବେ। ଏହି ପଦ୍ଧତି ଶିକ୍ଷାକୁ କେବଳ ବୃତ୍ତିମୂଳକ କରିପାରେ କିନ୍ତୁ ଗୋପବନ୍ଧୁ ଏହା ଚାହୁଁ ନଥିଲେ। ସେ ଛାତ୍ରମାନଙ୍କ ମନ ଓ ଶରୀର ଉଭୟକୁ ତାଲିମ ଦେବାକୁ ଚାହୁଁଥିଲେ; ତାହା ହେଲେ ସେମାନଙ୍କ ବ୍ୟକ୍ତିତ୍ୱ ସଂପୂର୍ଣ୍ଣ ରୂପେ ବିକଶିତ ହେବ ଓ ସତ୍ୟବାଦୀର ଛାପ ସେମାନଙ୍କୁ ସବୁଠାରେ ଆଦରଣୀୟ କରିବ। ସତ୍ୟବାଦୀ ଶ୍ରମିକ ତିଆରି କରିବ ନାହିଁ, ମଣିଷ ତିଆରି କରିବ। ଗୋପବନ୍ଧୁଙ୍କର ନିଃସନ୍ଦେହରେ ଏତାଦୃଶ ଆଦର୍ଶ ଥିଲା ଏବଂ ତାଙ୍କ ଆଦର୍ଶକୁ ବାସ୍ତବତାରେ ପରିଣତ କରିବାପାଇଁ ସେ ଭାଗ୍ୟକୁ ଦଳେ ଉପଯୁକ୍ତ ଯୋଗ୍ୟତା ଓ ପ୍ରବୃତ୍ତି ସଂପନ୍ନ ତରୁଣ ବୁଦ୍ଧିଜୀବୀଙ୍କୁ ଠୁଳ କରି ପାରିଥିଲେ। ସତ୍ୟବାଦୀ ବିଦ୍ୟାଳୟର ଏହି ଶିକ୍ଷକମାନେ ଜୀବନର ଭୋଗବିଳାସକୁ ତ୍ୟାଗ କରି ସମାଜସେବା ବ୍ରତ ଗ୍ରହଣ କରିଥିଲେ। ଗୋପବନ୍ଧୁଙ୍କ ନେତୃତ୍ୱ ଓ ନିର୍ଦ୍ଦେଶ ପାଇବା ଯୋଗୁ ସେମାନଙ୍କ ପ୍ରଗତି ପଥରେ ଆଉ କୌଣସି ଅନ୍ତରାୟ ରହିଲା ନାହିଁ। ତେଣୁ ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟର ଶିକ୍ଷା ପଦ୍ଧତି କେବଳ ଅନନ୍ୟ ସାଧାରଣ ନ ଥିଲା, ପ୍ରଦେଶର ଅନ୍ୟାନ୍ୟ ବିଦ୍ୟାଳୟଗୁଡ଼ିକ ଏହାକୁ ପ୍ରଶଂସା ଓ ଅନୁକରଣ କରିଥିଲେ।

## ଶିକ୍ଷାଦାନ ପ୍ରଣାଳୀ

ଏହି ବିଦ୍ୟାଳୟର ଶିକ୍ଷକମାନେ କେବଳ ଅଧ୍ୟାପନା କରି କିଂବା ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ପିଲାମାନଙ୍କୁ ପ୍ରସ୍ତୁତ କରି ବା ପାଠ୍ୟକ୍ରମ ସମାପ୍ତ କରି ସନ୍ତୁଷ୍ଟ ହେଉ ନଥିଲେ। ଏହା ଗୋଟିଏ ଆବାସିକ ଅନୁଷ୍ଠାନ ଥିଲା ଏବଂ ଛାତ୍ର ଓ ଶିକ୍ଷକମାନଙ୍କ ପକ୍ଷରେ ଛାତ୍ରାବାସରେ ରହିବା ବାଧ୍ୟତାମୂଳକ ହୋଇଥିଲା। ପ୍ରଧାନ ଶିକ୍ଷକ ନିଜକୁ ଶିକ୍ଷକ ଓ ଛାତ୍ରମାନଙ୍କୁ ନେଇ ଗଠିତ ପରିବାରର କର୍ତ୍ତାରୂପେ ବିଚାର କରୁଥିଲେ ଏବଂ ତରୁଣ ଶିକ୍ଷକମାନେ ନିଜକୁ, ନିଜ ଦାୟିତ୍ୱରେ ଥିବା ଛାତ୍ରମାନଙ୍କ ଜ୍ଞାନ

ଓ ପ୍ରଭାବ ବଳରେ ଶିକ୍ଷକମାନଙ୍କୁ ଯଥା ସମ୍ଭବ ଉପଯୋଗୀ କରୁଥିଲେ . ଏବଂ ଶିକ୍ଷକମାନେ ବିଦ୍ୟାଳୟର ଅଧ୍ୟାପନା ଓ ଛାତ୍ରାବାସ ଜୀବନକୁ ଏପରି ଚିତ୍ତାକର୍ଷକ, ଆନନ୍ଦପ୍ରଦ ଓ ଉପଭୋଗ୍ୟ କରୁଥିଲେ ଯେ ପ୍ରଦେଶର ବିଭିନ୍ନ ଅଞ୍ଚଳରୁ ଛାତ୍ରମାନେ ବହୁସଂଖ୍ୟାରେ ଆସୁଥିଲେ। ଶିକ୍ଷକମାନଙ୍କ ଅଧ୍ୟାପନା ଟିପ୍ପଣୀକୁ ନିଜେ ପ୍ରଧାନ ଶିକ୍ଷକ ପର୍ଯ୍ୟବେକ୍ଷଣ କରୁଥିଲେ ଏବଂ ଶିକ୍ଷାଦାନ ପ୍ରଣାଳୀ ଓ ଅଧ୍ୟାପନା ପରିମାଣରେ ସମାନତା ରକ୍ଷା କରିବା ତାଙ୍କ ଦାୟିତ୍ୱ ଥିଲା। ଅନ୍ୟ ଯେ କୌଣସି ବିଦ୍ୟାଳୟରେ ଶିକ୍ଷକମାନେ ଏହାକୁ ନିଜ ସ୍ୱାଧୀନତା ଓ ଆତ୍ମନିୟନ୍ତ୍ରଣ ଉପରେ ହସ୍ତକ୍ଷେପ ବୋଲି ବିଚାରିଥାନ୍ତେ କିନ୍ତୁ ସତ୍ୟବାଦୀ ବିଦ୍ୟାଳୟ ଗୋଷ୍ଠୀ ନିଜ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଦୃଷ୍ଟିରୁ ସ୍ୱେଚ୍ଛାପ୍ରଣୋଦିତ ଭାବରେ ପ୍ରଧାନ ଶିକ୍ଷକଙ୍କ ନିର୍ଦ୍ଦେଶ ଗ୍ରହଣ କରୁଥିଲେ।

ଶିକ୍ଷକମାନଙ୍କ ପାଇଁ ସାଧାରଣ ପ୍ରକୋଷ୍ଠ ନଥିଲା। ପ୍ରଧାନ ଶିକ୍ଷକ ଓ ଅନ୍ୟଶିକ୍ଷକ ଗୋଟିଏ ସ୍ଥାନରେ ଏକତ୍ର ବସି ଛାତ୍ର ଓ ବିଦ୍ୟାଳୟର ସମସ୍ୟାମାନ ଆଲୋଚନା କରୁଥିଲେ। ପ୍ରତି ଘଣ୍ଟା ଆରମ୍ଭରେ ଶିକ୍ଷକ ଗତ ଦିବସରେ ପଢ଼ାଇଥିବା ପାଠ୍ୟ ବିଷୟରେ ଦଶ ପନ୍ଦର ମିନିଟ୍ ଆଲୋଚନା କରୁଥିଲେ ଏବଂ ଛାତ୍ରମାନଙ୍କ ଦ୍ୱାରା ଲିଖିତ ଖାତାକୁ ଘରକୁ ନେଇ ଯତ୍ନ ସହକାରେ ପରୀକ୍ଷା କରୁଥିଲେ। ଘଣ୍ଟା ଶେଷ ହେବା ବେଳକୁ ମଧ୍ୟ ସେ ଦିନ ଅଧ୍ୟାପିତ ପାଠ୍ୟ ବିଷୟରେ ଛାତ୍ରମାନଙ୍କୁ ପ୍ରଶ୍ନ ପଚରା ଯାଉଥିଲା। ତଳ ଶ୍ରେଣୀର ଛାତ୍ରମାନେ ଗୃହ ପାଠ୍ୟ ପ୍ରସ୍ତୁତ କରିବା ବେଳେ ଉପର ଶ୍ରେଣୀର ଛାତ୍ରମାନେ ସାହାଯ୍ୟ ନ କରିବାକୁ କୁହା ଯାଉଥିଲା, କାରଣ ଛାତ୍ରମାନେ ଅଧ୍ୟାପନା ଦ୍ୱାରା ଉପକୃତ ନ ହେବାର ଆଶଙ୍କା ଥିଲା। ଶିକ୍ଷକମାନେ ମଧ୍ୟ ଛାତ୍ରାବାସ ପ୍ରକୋଷ୍ଠଗୁଡ଼ିକୁ ଯାଇ ଦୁର୍ବଳ ଛାତ୍ରମାନଙ୍କୁ ପାଠ ବୁଝିବାରେ ସାହାଯ୍ୟ କରୁଥିଲେ। ଗଣିତ ଶିକ୍ଷକ ଆଚାର୍ଯ୍ୟ ହରିହର ଦାସ କଠଉ ପିନ୍ଧି ହାତରେ ଖଣ୍ଡେ ବେତ ଧରି ଛାତ୍ରାବାସରେ ବୁଲିବା ଦୃଶ୍ୟ ଅସାଧାରଣ ହେଲେ ବି ନିତ୍ୟ ନୈମିତିକ କାର୍ଯ୍ୟ ଥିଲା। ଶୃଙ୍ଖଳା ରକ୍ଷା କ୍ଷେତ୍ରରେ ଖ୍ୟାତିସମ୍ପନ୍ନ ପ୍ରଧାନ ଶିକ୍ଷକ ମଧ୍ୟ ନିଜେ ଅଭ୍ୟାସ କରି ଛାତ୍ରାବାସରେ ବୁଲୁଥିଲେ।

**ସାହିତ୍ୟ ଚର୍ଚ୍ଚା**

ପ୍ରତ୍ୟେକ ଶ୍ରେଣୀର ଛାତ୍ରମାନେ ଗୋଟିଏ ହାତଲେଖା ଶ୍ରେଣୀ ପତ୍ରିକା ପ୍ରକାଶ କରୁଥିଲେ। ଏହା ଛଡ଼ା ଛାତ୍ର ଓ ଶିକ୍ଷକମାନଙ୍କ ଲେଖା ସମ୍ବଳିତ ଗୋଟିଏ ସ୍କୁଲ-ପତ୍ରିକା ମଧ୍ୟ ପ୍ରଧାନ ଶିକ୍ଷକ ଛପାଉଥିଲେ। ଦ୍ୱିତୀୟ ବା ଦଶମ ଶ୍ରେଣୀର ପତ୍ରିକା "ବାଣୀ" ଖ୍ୟାତି ଅର୍ଜିଥିଲା। ଛାତ୍ରମାନେ ନିଜ ଲେଖାଗୁଡ଼ିକୁ ଶିକ୍ଷକମାନଙ୍କ ଦ୍ୱାରା ସଂଶୋଧିତ ଓ ମାର୍ଜିତ କରାଇ ନେଉଥିଲେ; ଶିକ୍ଷକମାନେ ମଧ୍ୟ ଛାତ୍ରମାନଙ୍କ ଅନ୍ତର୍ନିହିତ ସାହିତ୍ୟ ପ୍ରତିଭା ବିକାଶ କରାଇବାରେ ଆଗ୍ରହୀ ଥିଲେ। ଶିକ୍ଷକ ଓ ଛାତ୍ର ଏକାଠି ମିଶି କବି ସମ୍ମିଳନୀ କରି ନିଜ ନିଜ ରଚନା ପାଠ କରୁଥିଲେ।

**ତର୍କ**

ଛାତ୍ରମାନଙ୍କ ବାଗ୍ମିତାକୁ ବିକଶିତ କରାଇବାରେ ଆଗ୍ରହୀ ଗୋପବନ୍ଧୁ ଯେଉଁଠିକୁ ଯାଉଥିଲେ, ସେଠାରେ ତର୍କସଭା ଆୟୋଜନ କରୁଥିଲେ। ସତ୍ୟବାଦୀ ବିଦ୍ୟାଳୟର

ତର୍କସଭା ପ୍ରତି ଶନିବାର ଦିନ ଅନୁଷ୍ଠିତ ହୋଇ ନାନା ସମସ୍ୟା ଆଲୋଚିତ ହେଉଥିଲା। ଏଥିରେ ଯୋଗ ଦେବା ସମସ୍ତଙ୍କ ପାଇଁ ବାଧ୍ୟତା ମୂଳକ ଥିଲା। ବେଳେ ବେଳେ ଓଡ଼ିଶା ତଥା ଭାରତର ବିଶିଷ୍ଟ ବ୍ୟକ୍ତିମାନେ ବିଦ୍ୟାଳୟ ଦେଖିବାଲାଗି ବହୁ ସଂଖ୍ୟାରେ ଆସି ତର୍କସଭାରେ ଉଦ୍‌ବୋଧନ ଦେଉଥିଲେ। ଗୋପବନ୍ଧୁ ସାକ୍ଷୀଗୋପାଳରେ ଥିବାବେଳେ ଏହି ତର୍କସଭାରେ ସଭାପତି ବା ସାଧାରଣ ବକ୍ତା ଭାବରେ ଅଂଶ ଗ୍ରହଣ କରୁଥିଲେ।

ଏହି ସ୍କୁଲଟି ଗୋଟିଏ ସାଧାରଣ ଅନୁଷ୍ଠାନ ନଥିଲା। ପ୍ରତିଭାବାନ ବ୍ୟକ୍ତି ତିଆରି କରିବା ଗୋପବନ୍ଧୁଙ୍କ ଆକାଂକ୍ଷା ଥିଲା ଏବଂ ମେଧାବୀ ଯୁବକମାନଙ୍କୁ ପାଇଲେ ସେ ଆବଶ୍ୟକ ସ୍ଥଳେ ବିଦ୍ୟାଳୟ ଖର୍ଚ୍ଚରେ ମଧ୍ୟ ଶିକ୍ଷା ଦେଉଥିଲେ। ଛାତ୍ର ଓ ଶିକ୍ଷକ ମଧ୍ୟରେ ଘନିଷ୍ଠ ସଂପର୍କ ଥିଲା। କେବେ କେବେ ଗୋପବନ୍ଧୁ ନିଜେ ଅଧ୍ୟାପନା କରି ଛାତ୍ରମାନେ ବିଦ୍ୟାଳୟରେ ମିଳୁଥିବା ସୁବିଧା ସୁଯୋଗର ସଦ୍‌ବ୍ୟବହାର କରନ୍ତୁ ବୋଲି ଶିଖାଉଥିଲେ।

**ପରିଭ୍ରମଣ**

ପରିଭ୍ରମଣ ହେଉଛି, ଶିକ୍ଷାର ଗୋଟିଏ ଅପରିହାର୍ଯ୍ୟ ଉପାଦାନ। ଛାତ୍ରମାନଙ୍କୁ ବିଭିନ୍ନ ସ୍ଥାନ ବୁଲାଇ ଦୃଶ୍ୟ ଦେଖାଇବା ପରିଭ୍ରମଣର ଉଦ୍ଦେଶ୍ୟ ନଥିଲା; ସେମାନଙ୍କୁ ବରଂ ଓଡ଼ିଶାର କୀର୍ତ୍ତିରାଜି ସହିତ ପରିଚିତ କରାଇ ପ୍ରଦେଶାଭିମାନ ସୃଷ୍ଟି କରିବା ଏହାର ଉଦ୍ଦେଶ୍ୟ ଥିଲା। ରେଳ, ମଟର ବା ଅନ୍ୟ କୌଣସି ଯାନରେ ଛାତ୍ରମାନେ ଯାଉ ନ ଥିଲେ । ସେମାନେ ପାଦରେ ଚାଲି ଚାଲି ଯାଉଥିଲେ। ଏହିପରି ଦୁଇଟି ଭ୍ରମଣକାରୀ ଦଳ ଥରେ ଖଣ୍ଡଗିରି ଓ ଆଉ ଥରେ କୋଣାର୍କ ଯାଇଥିଲେ ଏବଂ ଏଥିରେ ସବୁଶିକ୍ଷକ ଓ ଉପର ଶ୍ରେଣୀର ଛାତ୍ର ଭାଗ ନେଇଥିଲେ। ସାକ୍ଷୀଗୋପାଳଠାରୁ ଖଣ୍ଡଗିରି ବା ପିପିଲି ବାଟଦେଇ କୋଣାର୍କ ପର୍ଯ୍ୟନ୍ତ ଚାଲିଯିବା ବାଳକ ଛାତ୍ରମାନଙ୍କ ପକ୍ଷରେ ସହଜ ନ ଥିଲା; କେବଳ ବାଟ ସାରା ଦେଖିବାକୁ ଯାଉଥିବା କୀର୍ତ୍ତିମାଳା ସଂବନ୍ଧରେ ବୁଝାଇ ଦିଆଯାଉଥିଲା ଓ ସ୍ଥାନୋପଯୋଗୀ ବିରଚିତ ଗୀତଗୁଡ଼ିଏ ବୋଲି ସେମାନେ ଚାଲୁଥିଲେ ବୋଲି ଏହା ଗୋଟିଏ ବିରାଟ ଶୋଭାଯାତ୍ରା ପରି ଜଣା ପଡୁଥିଲା। ବିଦ୍ୟାଳୟର ଛାତ୍ରମାନଙ୍କୁ ବାଟ ପାଖରେ ଥିବା ଗ୍ରାମ ଲୋକମାନେ ଅଭ୍ୟର୍ଥନା କରି ଏହି ପଦଯାତ୍ରାରେ ଯୋଗଦେଉଥିଲେ। ଶିକ୍ଷକମାନେ ମଧ୍ୟ ସାମରିକ କାଇଦାରେ ‘ବାଁ’, ‘ଡାହାଣ’ ଡାକି ପଦଯାତ୍ରାକୁ ପରିଚାଳନା କରୁଥିଲେ। ଯେଉଁଠାରେ ରାତ୍ରି କଟାଇବାକୁ ସ୍ଥିର ହେଉଥାଏ, ସେଠାକୁ ଗୋଟିଏ ଆଗୁଆ ଦଳ ଯାଇ ତମ୍ବୁ ପକାଇ ଅନ୍ୟାନ୍ୟ ବ୍ୟବସ୍ଥା କରୁଥିଲେ। ଏଭଳି ଜୀବନ୍ତ ଶିକ୍ଷା କେବଳ ଛାତ୍ରମାନଙ୍କୁ ଆନନ୍ଦ ଦେଉ ନ ଥିଲା; ସେମାନେ ଓଡ଼ିଶା ଇତିହାସର ବିଭିନ୍ନ ଦିଗ ଶିଖି ପାରୁଥିଲେ। କୋଣାର୍କ ଭ୍ରମଣ ଯୋଗୁ ପଣ୍ଡିତ ନୀଳକଣ୍ଠ ଦାସ ବିଖ୍ୟାତ “କୋଣାର୍କ” କାବ୍ୟ ରଚନା କରିବାକୁ ଅନୁପ୍ରାଣିତ ହୋଇଥିଲେ।

**ଶୃଙ୍ଖଳା**

ଛାତ୍ରାବାସ ଗୁଡ଼ିକ ଗୋଟିଏ ଅଭିନବ ଯୋଜନାରେ ସଜିତ ହୋଇଥିଲା। ସେଗୁଡ଼ିକୁ ଭିନ୍ନ ଭିନ୍ନ ଅଂଶରେ ବିଭକ୍ତ କରାଯାଉଥିଲା ଏବଂ ପ୍ରତ୍ୟେକ ଅଂଶ ଜଣେ ଜଣେ

ଶିକ୍ଷକଙ୍କ ଦାୟିତ୍ୱରେ ଥିଲା। ପ୍ରତ୍ୟେକ ଅଂଶରେ ଜଣେ ଛାତ୍ର ମନିଟର ଥିଲେ। ପରେ ପରେ ମନିଟର ସଂଖ୍ୟା ତିନିକୁ ବଢ଼ାଇ ଦିଆଯାଇ ବିଭାଗ ବଣ୍ଟନ ପ୍ରଥା ଚଳିଲା। ଜଣେ ମନିଟର ପିଲାଙ୍କ ପାଠପଢ଼ା, ଆଉ ଜଣେ ହିସାବପତ୍ର ଓ ତୃତୀୟ ଜଣକ ସେମାନଙ୍କ ବାହ୍ୟ ଆଚରଣ କଥା ବୁଝୁଥିଲେ। ଅନ୍ତେବାସୀମାନଙ୍କୁ ମିତବ୍ୟୟିତା ଶିକ୍ଷା ଦେବାଲାଗି ଛାତ୍ରାବାସରେ ପ୍ରଥା ଥିଲା ଯେ ପିତାମାନେ ମାସିକ ଦେୟ ପିଲାମାନଙ୍କ ପାଖକୁ ନ ପଠାଇ ପ୍ରଧାନ ଶିକ୍ଷକଙ୍କ ନିକଟକୁ ପଠାଉଥିଲେ। ସେ ଏହି ଟଙ୍କାକୁ ମନିଟରଙ୍କ ଜିମା ଦେଉଥିଲେ। ଛାତ୍ରକୁ ତା ଟଙ୍କା କିସ୍ତିୱାରୀ ଦିଆ ଯାଉଥିଲା ଓ ଖର୍ଚ୍ଚ ହିସାବ ରଖିବା ଲାଗି ତାକୁ ବାଧ କରା ଯାଉଥିଲା। ମନିଟର ଓ ଭାରପ୍ରାପ୍ତ ଶିକ୍ଷକ ଏହି ହିସାବକୁ ସମୀକ୍ଷା କରୁଥିଲେ। ଛାତ୍ରାବାସରେ ତିନିଗୋଟି ବ୍ଲକ ବା ଅଂଶ ଥିଲା ଏବଂ ସେଥିପାଇଁ ନଅଜଣ ମନିଟର ନିଯୁକ୍ତ ହୋଇଥିଲେ। ଏହି ମନିଟରମାନେ କଡ଼ା ପହରା ଭିତରେ ଗୁପ୍ତ ବୈଠକ କରି ଛାତ୍ରମାନଙ୍କ ଶୃଙ୍ଖଳା ବିଷୟ ଆଲୋଚନା କରୁଥିଲେ। ସରଳ ସମସ୍ୟାଗୁଡ଼ିକୁ ସେମାନେ ଆଲୋଚନା କରି ନିଷତ୍ତି କରୁଥିଲେ; ଗୁରୁତର ସମସ୍ୟାଗୁଡ଼ିକ ଛାତ୍ରାବାସର ତତ୍ତ୍ୱାବଧାରକ ବା ପ୍ରଧାନ ଶିକ୍ଷକଙ୍କ ଦୃଷ୍ଟିକୁ ଅଣାଯାଉଥିଲା ଓ ସେ ଏହାର ନିଷତ୍ତି କରୁଥିଲେ। ମନିଟରଙ୍କ ସଭାକୁ "ଛାତ୍ରମାନଙ୍କ ନିଜ ଅଦାଲତ" ନାମ ଦିଆ ଯାଇଥିଲା।

ଦୁର୍ବଳ ଛାତ୍ରମାନଙ୍କ ପାଇଁ କୋଚିଂକ୍ଲାସ କରା ଯାଉଥିଲା ଏବଂ ପ୍ରତ୍ୟେକ ବିଷୟର କୁଶଳୀ ଶିକ୍ଷକ ଏହାର ଦାୟିତ୍ୱ ବହନ କରୁଥିଲେ। ବିଦ୍ୟାଳୟ ପ୍ରତି ଶିକ୍ଷକମାନଙ୍କ ଆନ୍ତରିକତା ସଂବନ୍ଧରେ ଗୋଟିଏ ଚିତ୍ତାକର୍ଷକ ଦୃଷ୍ଟାନ୍ତ ଅଛି। 1915ରେ ପଣ୍ଡିତ ନୀଳକଣ୍ଠ ଦାସ ସ୍କୁଲ ନିକଟରେ ଗୋଟିଏ ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠା କଲେ। ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ସଂସ୍କୃତ ଶିକ୍ଷା ଓ ସଂସ୍କୃତ ପ୍ରତି ଆଦର ସୃଷ୍ଟି କରିବା ଲାଗି ଏହା ଉଦ୍ଦିଷ୍ଟ ଥିଲା। ନୀଳକଣ୍ଠ ହାଇସ୍କୁଲ ପାଠ୍ୟ ସହିତ ସଂସ୍କୃତ ପ୍ରଥମା ପରୀକ୍ଷା ଦେବା ଲାଗି ତିନି ଜଣ ଛାତ୍ରଙ୍କୁ ବାଛିଲେ। ଏହି ଛାତ୍ରମାନେ ପ୍ରଥମାବସ୍ଥାରେ ଉଭୟ ଅନୁଷ୍ଠାନରେ ଏକାବେଳକେ ଅଧ୍ୟୟନ କରୁଥିଲେ, କିନ୍ତୁ ଏହି ବ୍ୟବସ୍ଥା ଛାତ୍ର ତଥା ସଂସ୍କୃତ ପଣ୍ଡିତଙ୍କ ପକ୍ଷରେ ଅସୁବିଧା ଜନକ ହେବାରୁ ନୀଳକଣ୍ଠ ନିଜେ ସଂସ୍କୃତ ପଢ଼ାଇବା ଦାୟିତ୍ୱ ବହନ କଲେ। ନୀଳକଣ୍ଠଙ୍କର ଅବଶ୍ୟ ସଂସ୍କୃତ ଜ୍ଞାନ ଥିଲା, କିନ୍ତୁ ସଂସ୍କୃତ ପରୀକ୍ଷା ନିମିତ୍ତ ଛାତ୍ରମାନଙ୍କୁ ପ୍ରସ୍ତୁତ କରିବା ଲାଗି ଏହା ଯଥେଷ୍ଟ ନ ଥିଲା। ତେଣୁ ସେ ନିଜେ ଘରେ ସଂସ୍କୃତ ପଢ଼ି ନିଜକୁ ପ୍ରସ୍ତୁତ କଲେ ଓ ପିଲାମାନଙ୍କୁ ପଢ଼ାଇଲେ। ତାଙ୍କ ଆନ୍ତରିକ ଚେଷ୍ଟା ଯୋଗୁ ପିଲା ତିନି ଜଣ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ।

### ରକ୍ଷଣଶୀଳତା ବିରୁଦ୍ଧରେ ସଂଗ୍ରାମ

ସାକ୍ଷୀଗୋପାଳ ଛାତ୍ରାବାସ ଜୀବନର ଅନ୍ୟ ଏକ ବୈଶିଷ୍ଟ୍ୟ ଥିଲା, ସାଧାରଣ ଭୋଜନାଳୟ। ଏହି ଅଞ୍ଚଳର ରକ୍ଷଣଶୀଳ ବ୍ରାହ୍ମଣ ତଥା ଅନ୍ୟାନ୍ୟ ଉଚ୍ଚ ଜାତିର ଲୋକମାନଙ୍କ ସାମାଜିକ କୁସଂସ୍କାର ଦୂର କରିବାକୁ ଶିକ୍ଷକମାନେ ବଦ୍ଧପରିକର ଥିଲେ।

ଗୋପବନ୍ଧୁଙ୍କର ମଧ୍ୟ ଏହି ଆଦର୍ଶ ଥିଲା । ଏହାକୁ କାର୍ଯ୍ୟକାରୀ କରିବାପାଇଁ ନୀଳକଣ୍ଠ ଓ ଗୋଦାବରୀଶ ନିଜ ବ୍ୟକ୍ତିଗତ ଜୀବନରେ ଆଗେଇ ଆସିଥିଲେ । ନୀଳକଣ୍ଠ ନିଶ ରଖିଲେ । ସେତେବେଳେ ନିଶ ରଖିବା ବ୍ରାହ୍ମଣମାନଙ୍କ ପକ୍ଷରେ ନିଷିଦ୍ଧ ଥିଲା, ତେଣୁ ସେମାନେ ଏହି ଆଚରଣକୁ ନାପସନ୍ଦ କଲେ । ପରେ ଏତାଦୃଶ ସଂସ୍କାର ଯୋଗୁ ତାଙ୍କ ନନାଙ୍କୁ ବ୍ରାହ୍ମଣ ସମାଜ ଗୋଟିଏ ପଙ୍‌କ୍ତି ଭୋଜନରୁ ଉଠାଇ ଦେଇଥିଲେ । ବ୍ରାହ୍ମଣମାନଙ୍କୁ ଆହ୍ୱାନ କରିବା ଭଳି ନୀଳକଣ୍ଠ ସେ କାଳର ବିଶିଷ୍ଟ ପତ୍ରିକା ''ଉତ୍କଳ ସାହିତ୍ୟ''ରେ 'ମୋ ନିଶ' ଶିରୋନାମାରେ ଗୋଟିଏ ଲେଖା ପ୍ରକାଶ କଲେ । ଏହି ଲେଖାକୁ ଭକ୍ତକବି ରାଓ ବାହାଦୁର ମଧୁସୂଦନ ରାଓ ପ୍ରଶଂସା କରିଥିଲେ । ନୀଳକଣ୍ଠଙ୍କୁ ଅନୁକରଣ କରି ହରିହର ଓ ଗୋଦାବରୀଶ ମଧ୍ୟ ନିଶ ରଖିଲେ । ଏହି ସଂଗ୍ରାମକୁ ଆଗେଇ ନେବାଲାଗି ବିଭିନ୍ନ ଜାତିର ଛାତ୍ରମାନେ ଏକତ୍ର ଭୋଜନ କରି ପରସ୍ପର ଅଇଁଠା ବାସନ ଧୋଇଲେ । ଏହା ଥିଲା ବ୍ରାହ୍ମଣମାନଙ୍କ ରକ୍ଷଣଶୀଳତା ପ୍ରତି ଏକ ଦାରୁଣ ଆଘାତ । ଏହି ସଂସାର ମୂଳକ ଆଚରଣ ଯୋଗୁ 1912ରେ ବିଦ୍ୟାଳୟ ଗୃହକୁ ପୋଡ଼ି ଦିଆ ଯାଇଥିଲା ।

ଛାତ୍ରାବାସରେ କେତେକ ଜିନିଷ ନିଷିଦ୍ଧ ଥିଲା । ଗୁଡ଼ାଖୁ, ପାନ, ବିଡ଼ି, ଭାଙ୍ଗ ଆଦି ମାଦକ ଦ୍ରବ୍ୟର ବ୍ୟବହାର ଉପରେ ନିଷେଧାଦେଶ ଥିଲା । ସେହିପରି ତାସ୍, ପଶା ଓ ଅନ୍ୟାନ୍ୟ ବାଜିମରା ଖେଳ ଖେଳିବା ପାଇଁ ଅନୁମତି ନ ଥିଲା । କେହି ଯୌନ ଅପରାଧ କଲେ ତାକୁ ନିକଟରେ ଥିବା ଗୋଟିଏ ମାଟି ଘରେ ଅଲଗା ରଖା ଯାଉଥିଲା ଏବଂ ସ୍ତ୍ରୀଲୋକମାନେ କାର୍ତ୍ତିକ ମାସରେ ହବିଷ୍ୟ କରି ଓଳିଏ ଖାଇବା ପରି ତାକୁ ଦିନ ଭିତରେ ଥରେ ଖାଇବାକୁ ଦିଆ ଯାଉଥିଲା । ସେହି ଏକାକୀ ରହଣି ସମୟରେ ତାକୁ ବ୍ରହ୍ମଚର୍ଯ୍ୟ ସଂବନ୍ଧରେ ଶିକ୍ଷା ଦିଆ ଯାଉଥିଲା ଏବଂ ତାହାର ହୃଦୟ ପରିବର୍ତ୍ତନ ହେବା ବିଷୟରେ ଶିକ୍ଷକମାନେ ନିଶ୍ଚିତ ହେବା ପରେ ହିଁ ତାକୁ ଅନ୍ୟ ଛାତ୍ରମାନଙ୍କ ସହିତ ରହିବାକୁ ଅନୁମତି ଦିଆ ଯାଉଥିଲା। କୌଣସି ଛାତ୍ର ଦୁଷ୍ଟ ବୋଲି ଜଣା ପଡ଼ିଲେ ତାକୁ ମନିଟର କରି ଦିଆ ଯାଉଥିଲା । ମନିଟରମାନେ ଅନ୍ୟ ଛାତ୍ରମାନଙ୍କ ବିରୁଦ୍ଧରେ ବେଳେ ବେଳେ କର୍ତ୍ତୃପକ୍ଷଙ୍କୁ ଜଣାଇବା ନିୟମ ଥିବାରୁ ସେମାନଙ୍କୁ ଅନ୍ୟମାନେ ''ଆଦର୍ଶ'' ବୋଲି ନାମ ଦେଇ ଉପହାସ କରୁଥିଲେ; ସେହି ଦିନଠାରୁ ଏହା ଗୋଟିଏ ଘୃଣାବ୍ୟଞ୍ଜକ ଶବ୍ଦ ହୋଇଗଲା ।

**ବ୍ୟାୟାମ**

ଆଗରୁ କୁହାହୋଇଛି ଯେ ବଙ୍ଗୀୟ ସନ୍ତ୍ରାସବାଦୀ ବିପ୍ଳବୀ ଶଶୀଭୂଷଣ ରାୟ ଚଉଧୁରୀଙ୍କ ସଂସର୍ଗ ଯୋଗୁ ଗୋପବନ୍ଧୁ ବିଭିନ୍ନ ସ୍ଥାନରେ ଓଡ଼ିଶାର ଯୁବକମାନଙ୍କୁ ଲାଠି ଓ ଖଣ୍ଡାଖେଳ ତଥା ବ୍ୟାୟାମ ଶିକ୍ଷା ଦେବାଲାଗି ଆଖଡ଼ା ବା ବ୍ୟାୟାମଶାଳା ଖୋଲିଥିଲେ । ସାକ୍ଷୀଗୋପାଳ ବିଦ୍ୟାଳୟରେ ମଧ୍ୟ ଏପରି ଗୋଟିଏ ବ୍ୟାୟାମଶାଳା ପ୍ରତିଷ୍ଠା ହୋଇ ଜଣେ ଶିକ୍ଷକଙ୍କ ଦାୟିତ୍ୱରେ ଥିଲା । ଦଳ ଦଳ ହୋଇ ଛାତ୍ରମାନେ କସରତ, ଦେଶୀଖେଳ ଓ ଚାରି ମାଇଲ ଦଉଡ଼ ଶିକ୍ଷା କରୁଥିଲେ । ସମାନ୍ତରାଳ

ଦଣ୍ଡଖେଳର ବ୍ୟବସ୍ଥା ବି ଥିଲା । ପ୍ରତିଦିନ ଅଧ୍ୟାପନା ସମୟ ପରେ ଓ ବେଳେ ବେଳେ ପ୍ରତ୍ୟୁଷରେ ଛାତ୍ରମାନେ ବ୍ୟାୟାମ ଶିଖୁଥିଲେ । ଗୋଦାବରୀଶ ଓ ଅନ୍ୟ କେତେଜଣ ଶିକ୍ଷକ ପରେ ବ୍ୟାୟାମଶାଳାରେ ଯୋଗ ଦେଲେ । ଏହି ସମବେତ ବ୍ୟାୟାମ ଛାତ୍ରମାନଙ୍କ ପାଇଁ ପ୍ରେରଣାର ଅନ୍ୟ ଏକ ଉତ୍ସ ଥିଲା ।

**ସମୟ ନିର୍ଘଣ୍ଟ**

ବିଦ୍ୟାଳୟରେ ସୁସଂଯତ ସମୟ-ନିର୍ଘଣ୍ଟ ଥିଲା ଏବଂ ସମୟାନୁବର୍ତ୍ତିତା ଉପରେ ଗୁରୁତ୍ୱ ଦିଆ ଯାଉଥିଲା । ଛାତ୍ରମାନେ ଦୁଇଟି ଦଳରେ ଭୋଜନାଳୟକୁ ଯାଉଥିଲେ । ଚଉଦ ବର୍ଷ ପର୍ଯ୍ୟନ୍ତ ବୟସ୍କ ଛାତ୍ରମାନେ ପ୍ରଥମ ଦଳରେ ଖାଉଥିଲେ, ଅନ୍ୟମାନେ ଦ୍ୱିତୀୟ ଦଳରେ ଯାଉଥିଲେ । ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ କରିବା ନିୟମ ଥିଲା । ସକାଳେ ପ୍ରାର୍ଥନା ସଭା ହୋଇ ସ୍ତୋତ୍ର ଗାନ କରା ଯାଉଥିଲା ଓ ପ୍ରାର୍ଥନାର ଗୁରୁତ୍ୱ ବିଷୟରେ ପ୍ରତ୍ୟେକ ଦିନ ଜଣେ ଜଣେ ଶିକ୍ଷକ ଉଦ୍‌ବୋଧନ ଦେଉଥିଲେ । ଛାତ୍ରମାନେ ବ୍ୟବହାର କରିବେ ବୋଲି ସ୍କୁଲ ତରଫରୁ ଏକ ପଇସା (ବର୍ତ୍ତମାନ ଦୁଇ ପଇସା) ମୂଲ୍ୟର ଗୋଟିଏ ସ୍ତୋତ୍ର ବହି ମୁଦ୍ରିତ ହୋଇଥିଲା ।

**ଛାତ୍ରାବାସ ନିୟମାବଳୀ**

ଛାତ୍ରାବାସ ପରିଚାଳନା ପାଇଁ ପ୍ରବର୍ତ୍ତିତ ନିୟମାବଳୀରୁ କେତେଗୋଟି ନିମ୍ନରେ ଦିଆଗଲା:-

**ମନିଟରଙ୍କ କାର୍ଯ୍ୟ-**

(1) ସମୟ ନିର୍ଘଣ୍ଟ ଅନୁସାରେ ଛାତ୍ରମାନଙ୍କ ଅଧ୍ୟୟନ ତଦାରଖ କରିବା (2) ଉପଦେଶ, ଦଣ୍ଡବିଧାନ ଓ ବ୍ୟକ୍ତିଗତ ଦୃଷ୍ଟାନ୍ତ ଦ୍ୱାରା ଛାତ୍ରମାନଙ୍କ ସ୍ଖଳନ ନିରାକରଣ କରିବା ଏବଂ ଏଥିରେ ଫଳ ନ ହେଲେ ତତ୍ତ୍ୱାବଧାରକଙ୍କୁ ଜଣାଇ ଦେବା, (3) ମିତବ୍ୟୟିତା ଶିକ୍ଷା ଦେବାଲାଗି ଛାତ୍ରମାନଙ୍କୁ ହିସାବ ରଖିବାକୁ ବାଧ କରିବା (4) ବଜାରରୁ ଖାଦ୍ୟ କିଣି ଖାଇବା ବିଷୟରେ ଛାତ୍ରମାନଙ୍କୁ ଜଗିବା, (5) ସ୍କୁଲ ନିର୍ଘଣ୍ଟ ସମୟରେ ଛାତ୍ରାବାସକୁ ଆସି ବିଶ୍ରାମ ନେବାଲାଗି ସୁବିଧା ନ ଦେବା ନିମିତ୍ତ ସକାଳ ଦଶଟାରୁ ଅପରାହ୍ନ ଚାରିଘଣ୍ଟା ପର୍ଯ୍ୟନ୍ତ ପ୍ରକୋଷ୍ଠ ଗୁଡ଼ିକର ଚାବି ରଖିବା, (6) ସକାଳେ ଓ ସନ୍ଧ୍ୟାରେ ଛାତ୍ରମାନଙ୍କୁ ସାଙ୍ଗରେ ନେଇ ବ୍ୟାୟାମଶାଳା ବା ପ୍ରାର୍ଥନା ସଭାକୁ ଯିବା, (7) ଛାତ୍ରାବାସର ଅନ୍ତେବାସୀମାନଙ୍କ ଉପସ୍ଥାନ ରଖିବା, (8) ଅଧ୍ୟୟନ ସମୟ ମଧ୍ୟରେ ଅନ୍ତେବାସୀମାନଙ୍କୁ ବାହାରକୁ ନ ଛାଡ଼ିବା ଏବଂ (9) ବିଦ୍ୟାଳୟ ତଥା ଛାତ୍ରାବାସର ସମୟ- ନିର୍ଘଣ୍ଟକୁ କଡ଼ାକଡ଼ି ପାଳନ କରାଇବା । ମନିଟର କୌଣସି ଅନ୍ତେବାସୀଙ୍କ ବିରୁଦ୍ଧରେ ତତ୍ତ୍ୱାବଧାରକ ଆଚାର୍ଯ୍ୟ ହରିହର ଦାଶ ବା ପ୍ରଧାନ ଶିକ୍ଷକ ପଣ୍ଡିତ ନୀଳକଣ୍ଠ ଦାସଙ୍କ ନିକଟରେ ଅଭିଯୋଗ କଲେ କଠୋର ଦଣ୍ଡ ଦିଆ ଯାଉଥିଲା ।

ଗଣତାନ୍ତ୍ରିକ ପ୍ରଣାଳୀରେ ଖାଦ୍ୟ ବ୍ୟବସ୍ଥା ପରିଚାଳିତ ହେଉଥିଲା ଓ ଛାତ୍ରମାନେ ଗୋଟିଏ ମେସ ପରିଚାଳନା ସମିତି ନିର୍ବାଚନ କରୁଥିଲେ । ଏଥିରେ 45 ଜଣ

ସଭ୍ୟ ଥିଲେ ଓ ପ୍ରତ୍ୟେକ ଦିନ ତିନିଜଣ ସ୍ୱେଚ୍ଛାସେବକ ବଜାର ସଉଦା କରୁଥିଲେ। ବଜାର ସଉଦା ଆଣି ସାରିବା ପରେ ଜଣେ ବେତନପ୍ରାପ୍ତ ପରିଚାଳକଙ୍କୁ ସେମାନେ ହିସାବ ବୁଝାଇ ଦେଉଥିଲେ। ଅନ୍ତେବାସୀମାନେ ଜଣେ ସଂପାଦକ ନିର୍ବାଚନ କରୁଥିଲେ; ସେ ମେସର ପୂର୍ଣ୍ଣ ଦାୟିତ୍ୱ ବହନ କରି ହିସାବ ରଖିବା, ସୁଖାଦ୍ୟ ଯୋଗାଇବା ଓ ଅନ୍ୟାନ୍ୟ ବିଷୟ ବୁଝିବା ନେଇ ମେସ କମିଟି ପାଖରେ ଉତ୍ତରଦାୟୀ ଥିଲେ।

ଏହିପରି ଭାବରେ ସତ୍ୟବାଦୀ ବିଦ୍ୟାଳୟ ଓ ଛାତ୍ରାବାସ ଆତ୍ମଶୃଙ୍ଖଳା, ଗଣତାନ୍ତ୍ରିକ ପରିଚାଳନା ଓ ଆଦର୍ଶ ଛାତ୍ର ଜୀବନ ସଂବନ୍ଧରେ ଛାତ୍ରମାନଙ୍କୁ ଶିକ୍ଷା ଦେଉଥିଲା। ଏହାର ଦଶ ବର୍ଷ କାର୍ଯ୍ୟ କାଳ ମଧ୍ୟରେ ଯେଉଁମାନେ ଏହି ଅନୁଷ୍ଠାନରେ ରହି ଭବିଷ୍ୟତ ଓଡ଼ିଶାରେ ବିଶିଷ୍ଟ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ଶିକ୍ଷକମାନଙ୍କଠାରୁ ଶିକ୍ଷାଲାଭ କରି ବାହାରି ଥିଲେ, ସେମାନେ ଜୀବନ ସାରା ଏହି ଅନୁଷ୍ଠାନର ଗୌରବ ଭୁଲି ପାରିନାହାନ୍ତି। ''ସତ୍ୟବାଦୀ'' ନାମ ହିଁ ପ୍ରତିଷ୍ଠାର ସୂଚକ ଥିଲା ଏବଂ ପୂର୍ବତନ ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ନିଜ ଜୀବନ, ଆଚରଣ ଓ କାର୍ଯ୍ୟକଳାପ ଦ୍ୱାରା ଏହାର ଯଥାର୍ଥତା ପ୍ରମାଣ କରିଥିଲେ।

# ବିଧାନ ପରିଷଦରେ

1912-ଜଣେ ଛୋଟଲାଟଙ୍କ ଅଧୀନରେ ବିହାର ଓ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲା। 1909ରେ ଭାରତ ଶାସନ ଆଇନ ଅନୁସାରେ ଗୋଟିଏ ବିଧାନ ପରିଷଦ ଗଠିତ ହୋଇଥିଲା। ଏଥିରେ ଅତିରିକ୍ତ ସଭ୍ୟ ବୋଲି କୁହାଯାଉଥିବା କେତେଜଣ ନିର୍ବାଚିତ ସଭ୍ୟ ଥିଲେ। ଓଡ଼ିଶାର ସ୍ଥାନୀୟ ଶାସନାନୁଷ୍ଠାନମାନଙ୍କ ତରଫରୁ ଏହିପରି ଜଣେ ଅତିରିକ୍ତ ସଭ୍ୟ ନିର୍ବାଚିତ ହେଉଥିଲେ। ଉତ୍କଳ ଗୌରବ ମଧୁସୂଦନ ଦାସ ଏହି ସ୍ଥାନଟିରେ ନିର୍ବାଚନ ଲଢ଼ିବାକୁ ପଣ୍ଡିତ ଗୋପବନ୍ଧୁଙ୍କୁ ଅନୁରୋଧ କଲେ। ସେ କାଳର ବିଧାନ ପରିଷଦର ଗଠନ ପଦ୍ଧତିରେ କୌଣସି ସଭ୍ୟ ସରକାରୀ ନୀତିକୁ ପ୍ରଭାବିତ କରି ଜନସାଧାରଣଙ୍କ ଆପତ୍ତିଗୁଡ଼ିକ ଦୂର କରାଯାଇ ପାରିବ ବୋଲି ଗୋପବନ୍ଧୁଙ୍କର ବିଶ୍ୱାସ ନ ଥିଲା ବୋଲି ସେ ଏଥିରେ ପ୍ରବେଶ କରିବା ବିଷୟରେ ସ୍ୱଭାବତଃ ବିମୁଖ ଥିଲେ। ସେତେବେଳେ ଲାଟ ଓ ତାଙ୍କ ପରିଷଦ ଶାସନ ଚଳାଉଥିଲେ। ସେମାନେ ଜନମତ ପ୍ରତି ଉଦାସୀନ ଥିଲେ। ଲୋକଙ୍କ ଦୁଃଖ କାହାଣୀ ଶୁଣାଇ ଏହି ଦାୟିତ୍ୱ ବିହୀନ ଶାସନକୁ ପ୍ରଭାବିତ କରି ହେଉ ନ ଥିଲା। ସମାଜସେବା ବ୍ରତ ଗ୍ରହଣ କରିଥିବା ଗୋପବନ୍ଧୁ ବିଚାରୁ ଥିଲେ ଯେ ସେ ଗାଁ ମାନଙ୍କରେ ଲୋକଙ୍କ ପାଖରେ ରହିବା ଉଚିତ; ତେଣୁ ପରିଷଦର ସଭ୍ୟ ପଦ ଲୋଡ଼ି ଲୋକଙ୍କ ଠାରୁ ଦୂରେଇ ଯିବା ଉଚିତ ନୁହେଁ। କିନ୍ତୁ ସେକାଳ ଓଡ଼ିଶାର ଅବିସମ୍ବାଦୀ ଓ ଅପ୍ରତିଦ୍ୱନ୍ଦୀ ନେତା ମଧୁସୂଦନଙ୍କ ଅନୁରୋଧ ଏକ ପ୍ରକାର ଆଦେଶ ପରି ଥିବାରୁ ଗୋପବନ୍ଧୁ ସହଜରେ ତାକୁ ଏଡ଼ି ପାରି ନ ଥିଲେ। ତେଣୁ ସେ ନିର୍ବାଚନରେ ପ୍ରାର୍ଥୀ ହେଲେ ଏବଂ ମଧୁସୂଦନ ଓଡ଼ିଶାର ପ୍ରତ୍ୟେକ ନଗର ପାଳିକା ସଭ୍ୟଙ୍କୁ ପତ୍ରଲେଖି ତାଙ୍କୁ 1917ରେ ନିର୍ବାଚିତ କରାଇଲେ।

ବ୍ୟବସ୍ଥାପକ ରୂପେ ସେ ମୁଖ୍ୟତଃ ଚାରିଗୋଟି ସମସ୍ୟା ପ୍ରତି ଗୁରୁତ୍ୱ ଆରୋପ କରିଥିଲେ ଯଥା:- (କ) ବଙ୍ଗଳା, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଏବଂ ବିହାର ଓ ଓଡ଼ିଶାରେ ଥିବା ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର ମିଶାଇ ଗୋଟିଏ ଶାସନ ଅଧୀନରେ ରଖିବା, (ଖ) ଓଡ଼ିଶାକୁ ବନ୍ୟା ଓ ଦୁର୍ଭିକ୍ଷ ଦାଉରୁ ରକ୍ଷା କରିବା ଲାଗି ସ୍ଥାୟୀ ବ୍ୟବସ୍ଥା କରିବା, (ଗ) ଅବକାରୀ କର ନ ଦେଇ ଲୁଣ ମାରିବା ଅଧିକାର ଓଡ଼ିଆମାନଙ୍କୁ ଫେରାଇ ଦେବା ଓ (ଘ) ସତ୍ୟବାଦୀ ଆଦର୍ଶରେ ଶିକ୍ଷା ପ୍ରସାର କରାଇବା।

ବ୍ୟବସ୍ଥାପକ ଜୀବନର ପ୍ରଥମ କାର୍ଯ୍ୟ ରୂପେ ସେ ଦେଶ ମିଶ୍ରଣ ସଂବନ୍ଧରେ ଗୋଟିଏ ପ୍ରସ୍ତାବ ଆଗତ କରି ସିଂହଭୂମି ପ୍ରତି ସବିଶେଷ ଦୃଷ୍ଟି ଦେଲେ । ଦଳିତ ଅବସ୍ଥାରେ ଥିବା ସିଂହଭୂମିର ଓଡ଼ିଆମାନଙ୍କ ହୃଦୟରେ ସାହସ ଦେବା ଲାଗି ସେ କେବଳ ଜିଲ୍ଲାର ବିଭିନ୍ନ ଅଞ୍ଚଳ ଗସ୍ତ କରି ନ ଥିଲେ, ଜାତୀୟତାର ଆଲୋକ ଜାଳି ରଖିବା ଉଦ୍ଦେଶ୍ୟରେ ସେ ନିଜ ସହକର୍ମୀମାନଙ୍କ ସାହାଯ୍ୟରେ ଓଡ଼ିଆ ବିଦ୍ୟାଳୟ ସ୍ଥାପନ କରାଇଥିଲେ । ସେ ସଂପାଦକ ଥାଇ ଚକ୍ରଧରପୁର ଠାରେ ଗୋଟିଏ ଓଡ଼ିଆ ହାଇସ୍କୁଲ ବସାଇଲେ ଓ ନିଜର ଘନିଷ୍ଠ ସହକର୍ମୀ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ସେଠାରେ ପ୍ରଧାନ ଶିକ୍ଷକ ହେବା ଲାଗି ପଠାଇଲେ । ପୋଡ଼ାହାଟ ଓ ଧଳଭୂମି ଅଞ୍ଚଳରେ ସେ ବହୁସଂଖ୍ୟକ ପ୍ରାଥମିକ ବିଦ୍ୟାଳୟ ମଧ ପ୍ରତିଷ୍ଠା କରିଥିଲେ । ବାହାଡ଼ାଗୋଡ଼ା ଠାରେ ସେ ଗୋଟିଏ ମଧ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରି ନିଜର ଜଣେ ନିଷ୍ଠାପର ସହକର୍ମୀ ବାସୁଦେବ ମହାପାତ୍ରଙ୍କୁ ପ୍ରଧାନ ଶିକ୍ଷକ ରୂପେ ପଠାଇଲେ । ଏହି ବିଦ୍ୟାଳୟଟି ପରେ ହାଇସ୍କୁଲ ହୋଇଛି । ସେ ଅଞ୍ଚଳର ଅଧିବାସୀମାନଙ୍କୁ ଦେଶପ୍ରୀତିରେ ଉଦ୍‌ବୁଦ୍ଧ କରିବା ଲାଗି ସେ ସ୍ଥାନେ ସ୍ଥାନେ ପୁରସ୍କାର ବିତରଣୀ ଉତ୍ସବ କରାଇ ଏହାର ସଭାପତି ଆସନରେ ଥାଇ ପ୍ରତିଷ୍ଠିତ ବିଦ୍ୟାଳୟଗୁଡ଼ିକୁ ଚଳାଇ ରଖାଇବା ଓ ନିଜ ଚେଷ୍ଟାରେ ନୂଆ ନୂଆ ସ୍କୁଲ ଖୋଲିବା ଲାଗି ଉଦ୍‌ବୋଧନ ଦେଉଥିଲେ । ସିଂହଭୂମିରେ ଓଡ଼ିଆ ଆନ୍ଦୋଳନ ଚଳାଇବା ବେଳେ ରାଧାନାଥ ରଥ ତାଙ୍କ ସଂଗେ ଯୋଗ ଦେଇଥିଲେ । ସେ ମଧପ୍ରଦେଶର ଫୁଲଝର, ଖଡ଼ିଆଳ, ପଦ୍ମପୁର ଓ ଚନ୍ଦ୍ରପୁର ଅଞ୍ଚଳ ଗସ୍ତ କରିଥିଲେ । ବଙ୍ଗଳା ସରକାର ମେଦିନୀପୁରର ଓଡ଼ିଆମାନଙ୍କୁ ଦବାଇ ଦେବା ଲାଗି ସେମାନଙ୍କ ବିରୁଦ୍ଧରେ ରାଷ୍ଟ୍ରଦ୍ରୋହ ଅଭିଯୋଗରେ ମୋକଦ୍ଦମା କରିଥିଲେ । ସେ ଏଥି ପ୍ରତି ଭୃକ୍ଷେପ ନ କରି ଓଡ଼ିଆମାନଙ୍କ ମଧରେ ଜାଗରଣ ଆଣି ପାରିଥିଲେ । ସେ ମାନ୍ଦ୍ରାଜ ପ୍ରଦେଶର ଜୟପୁର ଓ ବିଶାଖାପାଟଣା ଅଞ୍ଚଳ ଗସ୍ତ କରି ସ୍ଥାନୀୟ ଓଡ଼ିଆମାନଙ୍କ ମଧରେ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲେ ।

## ବନ୍ୟା ଓ ଦୁର୍ଭିକ୍ଷ ସମସ୍ୟା

ଗୋପବନ୍ଧୁଙ୍କ ଦ୍ୱିତୀୟ ଆଦରଣୀୟ ବିଷୟ ଥିଲା ବନ୍ୟା ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ସେବା କରିବା । ବନ୍ୟା ହେଉଛି ଓଡ଼ିଶାର ଗୋଟିଏ ପୌନପୌନିକ ସମସ୍ୟା; ମହାନଦୀ, କାଠଯୋଡ଼ି, ବିରୂପା, ବ୍ରାହ୍ମଣୀ, ବୈତରଣୀ, ଖରସ୍ରୋତା, ସାଳନ୍ଦୀ ଓ ସୁବର୍ଣ୍ଣରେଖା ନଦୀଗୁଡ଼ିକ ଓଡ଼ିଶାକୁ ଗଢ଼ିଛନ୍ତି ଏବଂ ଥରକୁ ଥର ଧ୍ୱଂସ ବି କରୁଛନ୍ତି । ଏହି ପ୍ରାକୃତିକ ଦୁର୍ବିପାକ ମଣିଷର ଆୟତ୍ତାଧୀନ ନ ହେଲେ ବି ସମଯୋପଯୋଗୀ ପ୍ରତିକାର କରି କ୍ଷୟକ୍ଷତିର ପରିମାଣ କମାଇବା ଓ ବିପନ୍ନ ଲୋକଙ୍କୁ ସାହାଯ୍ୟ କରିବା ସରକାରଙ୍କ କର୍ତ୍ତବ୍ୟ । ଅତ୍ୟନ୍ତ ପରିତାପର ବିଷୟ ଏହି ଯେ ଓଡ଼ିଆମାନେ ପ୍ରତିବର୍ଷ ବନ୍ୟାକ୍ଲିଷ୍ଟ ହେଉଥିଲେ ହେଁ ସରକାର କୌଣସି ପ୍ରତିକାର କରୁ ନାହାନ୍ତି । ଗୋପବନ୍ଧୁ ଭାବିଲେ, ଯଦି ଓଡ଼ିଆମାନଙ୍କୁ ସାହାଯ୍ୟ କରିବାଲାଗି ସରକାରଙ୍କୁ ପ୍ରବର୍ତ୍ତାଇ ନ ପାରିବେ, ତେବେ ବିଧାନ ପରିଷଦର ସଭ୍ୟ ହୋଇ ରହିବାରେ ଲାଭ କ'ଣ ?

୧୯୧୨ରେ ପୁରୀ ଜିଲ୍ଲାରେ ଦୁର୍ଭିକ୍ଷ ପଡ଼ିଥିଲା। ଲୋକଙ୍କ ଦୁଃଖଦୁର୍ଦ୍ଦଶା ବିଷୟରେ ସେ ଲୋମହର୍ଷକ ବିବରଣୀ ସଂବାଦପତ୍ର ମାନଙ୍କରେ ପ୍ରକାଶ କରି ବିରାଟ ପରିମାଣରେ ବେସରକାରୀ ସାହାଯ୍ୟ ପାଇଁ ବ୍ୟବସ୍ଥା କରିଥିଲେ। ଭାରତର ଚାରିଆଡୁ ସାହାଯ୍ୟ ଆସିବାକୁ ଲାଗିଲା, ତଥାପି ସରକାର ତାଙ୍କ ନିବେଦନ ପ୍ରତି କର୍ଣ୍ଣପାତ କଲେ ନାହିଁ, ପୁରୀ ଜିଲ୍ଲାରେ ଦୁର୍ଭିକ୍ଷ ଘୋଷଣା କଲେ ନାହିଁ କିମ୍ବା ଦୁର୍ଭିକ୍ଷ ନିୟମାବଳୀ ପ୍ରୟୋଗ କଲେ ନାହିଁ। ଏପରି କି ଜନସାଧାରଣଙ୍କ କ୍ଷୟକ୍ଷତିର ପରିମାଣ ହିସାବ କରି ପାରିଲେ ନାହିଁ। ସେ ୧୯20 ମସିହା ମାର୍ଚ୍ଚ 13 ତାରିଖ ଦିନ ଏହି ପ୍ରସଙ୍ଗ ବିଧାନ ପରିଷଦରେ ଉପସ୍ଥାପିତ କରିଥିଲେ। ସେ ପ୍ରସ୍ତାବ କରିଥିଲେ ଯେ ଉଣେଇଶି ହଜାର ଟଙ୍କାର ସାହାଯ୍ୟ ବ୍ୟବସ୍ଥା ଅତି କମ୍ ହୋଇ ଥିବାରୁ ପୋଲିସ ବିଭାଗ ବ୍ୟୟ ଅଟକଳରୁ ଏକତିରିଶ ହଜାର ଟଙ୍କା କମାଇ ଦେଇ ବନ୍ୟା ସାହାଯ୍ୟ ପରିମାଣକୁ ପଚାଶ ହଜାର ଟଙ୍କାକୁ ବଢ଼ାଇ ଦିଆଯାଉ। ଏଠାରେ ସ୍ମରଣ କରାଯାଇ ପାରେ ଯେ କୌଣସି ଅଞ୍ଚଳରେ ଦୁର୍ଭିକ୍ଷ ଘୋଷଣା ହେଲେ ମୋଟ ସାହାଯ୍ୟ ପରିମାଣର ତିନି ଚତୁର୍ଥାଂଶ ଭାରତ ସରକାର ଦିଅନ୍ତି ଅର୍ଥାତ୍ ପ୍ରାଦେଶିକ ସରକାର ପଚାଶ ହଜାର ଟଙ୍କା ଦେଲେ ଭାରତ ସରକାର ଦେଢ଼ଲକ୍ଷ ଟଙ୍କା ଦିଅନ୍ତେ ଓ ମୋଟ ସାହାଯ୍ୟ ପରିମାଣ ଦୁଇଲକ୍ଷ ଟଙ୍କା ହୁଅନ୍ତା। ସେ ଲୋକଙ୍କ ଅବସ୍ଥା ବିଷୟରେ ବିଶଦ ବିବରଣୀ ଦେଇ ସରକାରଙ୍କୁ ଗଛର ପତ୍ର ସାଙ୍ଗରେ ନେଇ ଦେଖାଇଲେ ଏବଂ ବନ୍ୟାକ୍ଲିଷ୍ଟ ଲୋକମାନଙ୍କର ଗୋଟିଏ ଆଲୋକଚିତ୍ର ସଭ୍ୟମାନଙ୍କ ମଧ୍ୟରେ ବାଣ୍ଟି ଥିଲେ। ସେ ଲୋକଙ୍କ ଅବସ୍ଥା ବର୍ଣ୍ଣନା କରୁଥିବା ବେଳେ ଏତେ ବିକଳ ହୋଇ କାନ୍ଦିଲେ ଯେ ସଭ୍ୟମାନେ ସ୍ତମ୍ଭୀଭୂତ ହୋଇ ଯାଇଥିଲେ। ପ୍ରତିକାର ବ୍ୟବସ୍ଥା କରିବା ଲାଗି ସମସ୍ତେ ସରକାରଙ୍କ ଉପରେ ଚାପ ଦେଲେ। ସେ କାଳର ସରକାର ଏପରି ଉପାଦାନରେ ଗଢ଼ା ହୋଇଥିଲା ଯେ ତାଙ୍କର ଜନସାଧାରଣଙ୍କ ପ୍ରତି ଆଦୌ ସହାନୁଭୂତି ନ ଥିଲା। ପଣ୍ଡିତ ଗୋପବନ୍ଧୁଙ୍କୁ ଉତ୍ତର ଦେବା ଫଳରେ ସେ କାଳର ଓଡ଼ିଶାର ବିଭାଗୀୟ କମିଶନର ଗ୍ରୁନିଙ୍ଗ ସରକାରୀ ସଭ୍ୟ ଭାବରେ ଉପସ୍ଥିତ ଥାଇ କହିଲେ, "ଲୋକଙ୍କ ଦୁର୍ଦ୍ଦଶା ବିଷୟରେ ଅତିରଞ୍ଜନ କରିବା ଗୋପବନ୍ଧୁଙ୍କ ଅଭ୍ୟାସ; ସେ ଏଠି ମଧ୍ୟ ତାହା ହିଁ କରିଛନ୍ତି। ମୁଁ ନିଜେ ଦୁର୍ଭିକ୍ଷ ଅଞ୍ଚଳକୁ ଯାଇଛି ଏବଂ ମୋ ନିଜ ଅଭିଜ୍ଞତାରୁ ଜାଣିଛି ଯେ ପରିସ୍ଥିତି ପ୍ରକୃତରେ ଏଡ଼େ ଗୁରୁତର ନୁହେଁ। ପୁରୀ ଜିଲ୍ଲା ବୋର୍ଡ଼ର ଉପସଭାପତି ମୋତେ ଜଣାଇଛନ୍ତି ଯେ ମୋଟ ପ୍ରାୟ ଦୁଇହଜାର ଲୋକ ମାଗଣା ସାହାଯ୍ୟ ପାଇବା ପାଇଁ ହକ୍‌ଦାର। ପାଞ୍ଚଗୋଟି ଚୌକିଦାରୀ ଇଉନିୟନର ଖୁବ୍ କମ୍ ଲୋକ ଦୁର୍ଭିକ୍ଷ-ପ୍ରପୀଡ଼ିତ ହୋଇଛନ୍ତି। ପୁରୀର ଜିଲ୍ଲା ମାଜିଷ୍ଟ୍ରେଟ ଆବଶ୍ୟକ ସାହାଯ୍ୟ ବ୍ୟବସ୍ଥା କରିଛନ୍ତି ଏବଂ ଯେଉଁ ପରିମାଣରେ ସାହାଯ୍ୟ ଦେବା ଉଚିତ, ତାହା ଦେବାକୁ ମୁଁ ତାଙ୍କୁ ନିର୍ଦ୍ଦେଶ ଦେଇଛି।" କମିଶନରଙ୍କ କଥା ରହିଲା। ସାହାଯ୍ୟ ପରିମାଣ ବଢ଼ାଇବା ଅନାବଶ୍ୟକ ବୋଲି ସରକାର କହିଲେ। ଦରକାର ପଡ଼ିଲେ ବେଶୀ ଟଙ୍କା ଦିଆଯିବ ବୋଲି ମଧ୍ୟ ପ୍ରତିଶ୍ରୁତି ମିଳିଲା। ସରକାରୀ ଉଦାସୀନତାରେ

କ୍ଷୁବ୍ଧ ହୋଇ ଗୋପବନ୍ଧୁ କହିଲେ, "ଛଅ ସାତ ଦିନ ତଳେ ଗ୍ରୁନିଂ ଥରେ ମାତ୍ର ସେ ଅଞ୍ଚଳକୁ ଯାଇଥିଲେ। ସେ ନିଜ ମଟରରେ ଯାଇ ଫେରି ଆସିଲେ। ସବୁଠାରୁ ବେଶୀ ବିପନ୍ନ ଗାଁଗୁଡ଼ିକୁ ମଟରଗାଡ଼ି ଯାଇ ପାରିବ ନାହିଁ; ତେଣୁ ସେ ସେଗୁଡ଼ିକ ଦେଖି ନାହାନ୍ତି। ମୁଁ ନିଜେ ପ୍ରତ୍ୟେକ ଗାଁକୁ ଥରେ ନୁହେଁ, ଚାରି ଥର ଯାଇଛି।" ଗ୍ରୁନିଂ ବାଧା ଦେଇ କହିଲେ, "ସେ ଦିନ ଘନ ଘନ ବିଜୁଳି ମାରୁଥିଲା, ରାସ୍ତା ମଧ ଖରାପ ଥିଲା। ମୁଁ କିପରି ସେ ଗାଁ ଗୁଡ଼ିକୁ ଯାଇଥାନ୍ତି ? ଏହା ଅବଶ୍ୟ ସତ ଯେ ସେଠାକୁ ଯିବା ଲାଗି ଗୋପବନ୍ଧୁ ମୋତେ ଡାକିଥିଲେ କିନ୍ତୁ ସେଠାକୁ ଯାଇ ପାରିଲି ନାହିଁ।" ଗୋପବନ୍ଧୁ କହି ଚାଲିଥିଲେ, "ସରକାର ଜଣେ ବେସରକାରୀ ସଭ୍ୟଙ୍କ ସହିତ ଜଣେ ସରକାରୀ ସଭ୍ୟ ପଠାଇ ଥିଲେ ସେମାନେ ମୋ ବିବରଣୀ ବିରୁଦ୍ଧରେ ଆପତ୍ତି କରି ପାରି ନ ଥାନ୍ତେ କିମ୍ବା ମୁଁ ଅତିରଞ୍ଜିତ ବର୍ଣ୍ଣନା ଦେଉଛି ବୋଲି ଗ୍ରୁନିଂ କହି ପାରି ନ ଥାନ୍ତେ। ଅବଶ୍ୟ ପାଞ୍ଚଗୋଟି ଇଉନିଅନର ଗ୍ରାମଗୁଡ଼ିକ ପ୍ରପୀଡ଼ିତ ହୋଇଛନ୍ତି କି ନାହିଁ, ମୁଁ କହି ପାରିବି ନାହିଁ, କିନ୍ତୁ ମୋର ଗୋଟିଏ ପ୍ରଶ୍ନର ଉତ୍ତରରେ ଏହି ପରିଷଦରେ ସଂବାଦ ଯୋଗାଇ ଦିଆ ଯାଇଥିଲା ଯେ ତିନିଗୋଟି ଥାନାର ପ୍ରାୟ ଦୁଇଶହ ପଚାଶଗୋଟି ଗ୍ରାମ ଢେର ଅଧିକ ଦୁର୍ଭିକ୍ଷ ପ୍ରପୀଡ଼ିତ। ଲୋକମାନେ ବହୁସଂଖ୍ୟାରେ ମରି ଯାଉଥିବା ବେଳେ ଯଦି ମୋ ପରି ଜଣେ ନଗଣ୍ୟ ବେସରକାରୀ ସଭ୍ୟ ଓ ସରକାରୀ ସଭ୍ୟମାନେ ଏପରି ଏକ ବିଷୟରେ ଏକମତ ହୋଇ ପାରିଲୁ ନାହିଁ, ତେବେ ଏ ସଂବନ୍ଧରେ ଆଉ ଆଲୋଚନା କରିବା ଅନାବଶ୍ୟକ। ମୁଁ ମୋ ନିଜ ଆଖିରେ ଦେଖିଛି ଏବଂ ମୁଁ ମୋ ଇନ୍ଦ୍ରିୟ ଗୁଡ଼ିକୁ ଅବିଶ୍ବାସ କରିବାର କୌଣସି କାରଣ ଦେଖୁ ନାହିଁ। ଏହାଛଡ଼ା ମୁଁ ଆଉ ବେଶି କିଛି କହି ପାରିବି ନାହିଁ। ଅବଶ୍ୟ ମାନ୍ୟବର ଭାରପ୍ରାପ୍ତ ସଭ୍ୟ ମୋତେ ଆଶ୍ବସନା ଦେଇଛନ୍ତି ଯେ ଦୁର୍ଭିକ୍ଷ ପରିସ୍ଥିତି ଘୋଷଣା କରିବା ଲାଗି କାରଣ ଦେଇ ପାରିଲେ ସେ ଅଧିକ ଅର୍ଥ ଯୋଗାଇ ଦେବେ। ତୁମେ ଦୁର୍ଭିକ୍ଷ ଘୋଷଣା କର ବା ନ କର, ଲୋକଙ୍କ ପ୍ରାଣ ରକ୍ଷା କର। ମୁଁ ଏହା କୃତାଞ୍ଜଳିପୁଟରେ ପ୍ରାର୍ଥନା କରୁଛି। ମାନ୍ୟବର ଗ୍ରୁନିଂ କହିଛନ୍ତି ଯେ ଯାହା କରିବା କଥା, କରାଯାଇଛି ଓ କରାଯାଉଛି। ଭଲ କଥା, ସରକାରୀ କର୍ମଚାରୀମାନେ ଯାହା କରୁଛନ୍ତି, ସେଥିରେ ମୁଁ ଦୋଷ ବାଛିବାକୁ ଚାହେଁନା। ସେମାନେ ବର୍ତ୍ତମାନ କ'ଣ କରି ପାରିବେ କରନ୍ତୁ ବୋଲି ମୁଁ ନିବେଦନ କରୁଛି। କୁହାହୋଇଛି ଯେ ଗୋଟିଏ କ୍ଷୁଦ୍ର ଜିଲ୍ଲାର ଅତି ଅଳ୍ପ ଅଞ୍ଚଳ ଦୁର୍ଭିକ୍ଷ-ପ୍ରପୀଡ଼ିତ, ସେଥି ପାଇଁ ଆୟବ୍ୟୟ ଅଟକଳରେ ବେଶି ପରିମାଣରେ ଅର୍ଥ ବ୍ୟବସ୍ଥା କରିବାର କୌଣସି କାରଣ ନାହିଁ। ପ୍ରପୀଡ଼ିତ ଅଞ୍ଚଳ ବଡ଼ କି ଛୋଟ, ସେଥିରେ କିଛି ଯାଏ ଆସେ ନାହିଁ। ମହାମହିମ ସମ୍ରାଟଙ୍କ ବିରାଟ ସାମ୍ରାଜ୍ୟ ଭିତରେ ଥିବା ପ୍ରଦେଶର କୌଣସି ଅଜଣା ଅଞ୍ଚଳରେ ଅନାହାରରେ ଜଣେ ମାତ୍ର ଲୋକ ପ୍ରାଣ ହରାଇଲେ, ତାଙ୍କ ରକ୍ତ ମୋ ଉପରେ ଓ ତାଙ୍କ ଶାସନ ପାଇଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଦାୟୀ ଥିବା ବ୍ୟକ୍ତିମାନଙ୍କ ଉପରେ ପଡ଼ିବ। ଏତିକି କହି ମୁଁ ସବୁ କଥା ମହାମାନ୍ୟ ଛୋଟଲାଟଙ୍କ ହାତରେ ଛାଡ଼ି ଦେଉଛି।"

ଗୋପବନ୍ଧୁଙ୍କ ଅଭିଭାଷଣ ମହାମାନ୍ୟ ଛୋଟଲାଟ ସାର ଏଡୱାର୍ଡ଼ ଗେଟଙ୍କୁ ଏତେ ଦୂର ବିଚଳିତ ଓ ଦୁଃଖିତ କରିଥିଲା ଯେ ସେ 1920 ମସିହା ଅପ୍ରେଲ ସାତ ତାରିଖ ଦିନ ପୁରୀ ଜିଲ୍ଲାର ଦୁର୍ଭିକ୍ଷ-ପ୍ରପୀଡ଼ିତ ଅଞ୍ଚଳକୁ ଗସ୍ତରେ ଆସିଥିଲେ। ଜିଲ୍ଲାର ସରକାରୀ କର୍ମଚାରୀମାନେ ତାଙ୍କର ଏହି ଗସ୍ତକୁ ବେସରକାରୀ ନେତା ମାନଙ୍କଠାରୁ ଲୁଚାଇ ରଖିବା ଅତି ଆଶ୍ଚର୍ଯ୍ୟଜନକ ବ୍ୟାପାର ଥିଲା। ସେମାନେ ଜାଣି ନ ଥିଲେ ଯେ ନିଜେ ଛୋଟଲାଟ ପଣ୍ଡିତ ଗୋପବନ୍ଧୁଙ୍କୁ ଖଣ୍ଡିଏ ଚିଠି ଲେଖି ତାଙ୍କ ସଂଗେ ଦୁର୍ଭିକ୍ଷ ପଡ଼ିଥିବା ଅଞ୍ଚଳକୁ ଯିବା ଲାଗି ନିମନ୍ତ୍ରଣ କରିଥିଲେ। ଯେଉଁ ଗ୍ରାମଗୁଡ଼ିକୁ ଗ୍ରୁନିଂ ଯାଇ ପାରି ନ ଥିଲେ, ଛୋଟଲାଟ ନିଜେ ସେଠାକୁ ଯାଇ ଦେଖିଲେ, ଲୋକେ କିପରି ଅନାବନା ଗଛର ପତ୍ର ଖାଇ ବଞ୍ଚିଛନ୍ତି, କେଉଁ ପରିମାଣରେ ସେମାନଙ୍କ ବାସଗୃହ କ୍ଷତିଗ୍ରସ୍ତ ହୋଇଛି, କିପରି ବସ୍ତ୍ରାଭାବ ଯୋଗୁ ପୁରୁଷ ଓ ସ୍ତ୍ରୀଲୋକମାନେ ତାଙ୍କୁ ସାକ୍ଷାତ କରି ପାରିଲେ ନାହିଁ ଏବଂ କେତେ ସଂଖ୍ୟାରେ ଲୋକେ ଗାଁ ଛାଡ଼ି ପଳାଇଛନ୍ତି। ସେ ଆହୁରି ମଧ୍ୟ ଦେଖିଲେ, ସ୍ତ୍ରୀ ଲୋକମାନଙ୍କ ପିତଳ ଖଡ଼ୁକୁ ଦେଖି ଗ୍ରୁନିଂ କିପରି ସୁନା ଖଡ଼ୁ ବୋଲି ବର୍ଣ୍ଣନା କରିଥିଲେ। ଶେଷରେ ଛୋଟଲାଟ ଏତେ ଦୂର ପ୍ରଭାବିତ ହୋଇ ଯାଇଥିଲେ ଯେ ସେ କହି ପକାଇଲେ, ‘‘ଗୋପବନ୍ଧୁ, ମୁଁ ଦୁଃଖର ସହିତ ସ୍ୱୀକାର କରୁଛି ଯେ ଯାହା କରିବାର କଥା, ସରକାର ତାହା କରି ନାହାନ୍ତି।’’ ଓଡ଼ିଶା ଓ ପୁରୀର ଶାସନ ଉପରେ ଏହା ଏକ ଦୋଷାରୋପ। ପୁରୀର ଜିଲ୍ଲା ମାଜିଷ୍ଟ୍ରେଟ ଏଥିପାଇଁ ଏତେ ବିରକ୍ତ ହୋଇ ଯାଇଥିଲେ ଯେ ସେ ଥରେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ କହିଥିଲେ, ‘‘ମୋର ପୁରୀ ଜିଲ୍ଲାରେ ଯୋଡ଼ିଏ ବିରାଟ ସମସ୍ୟା ରହିଛି। ପ୍ରଥମଟି ହେଉଛି ଦୁର୍ଭିକ୍ଷ, ଅପରଟି ନିଜେ ଗୋପବନ୍ଧୁ।’’

ଗୋପବନ୍ଧୁ ଏ ସଂବନ୍ଧରେ ଆଉ ପାଦେ ଆଗେଇ ଯାଇଥିଲେ। ଦୁର୍ଭିକ୍ଷକ୍ଲିଷ୍ଟ ଲୋକମାନଙ୍କୁ ସାହାଯ୍ୟ ଦେବା ହେଉଛି ଗୋଟିଏ ସାମୟିକ ବ୍ୟବସ୍ଥା; ଓଡ଼ିଶାକୁ ପୌନପୌନିକ ବନ୍ୟା ଦାଉରୁ ରକ୍ଷା କରିବା ନିମିତ୍ତ ସ୍ଥାୟୀ ବ୍ୟବସ୍ଥା ହେବା ଆବଶ୍ୟକ। ଏହି ଉଦ୍ଦେଶ୍ୟରେ ସେ ଓ ବ୍ରଜ ସୁନ୍ଦର ଦାସ ବିଧାନ ପରିଷଦରେ ପ୍ରସ୍ତାବ ଆଗତ କଲେ ଯେ ବନ୍ୟା ପ୍ରପୀଡ଼ିତ ଜିଲ୍ଲା ଗୁଡ଼ିକ ସଂବନ୍ଧରେ ବିବରଣୀ ସଂଗ୍ରହ କରିବା ଓ ବନ୍ୟା ନିରାକରଣ ଲାଗି ସ୍ଥାୟୀ ବ୍ୟବସ୍ଥା ବିଷୟରେ ସୁପାରିସ ଦେବା ନିମିତ୍ତ ଗୋଟିଏ କମିଟି ନିଯୁକ୍ତ ହେଉ। ସେ କାଳର ଦାୟିତ୍ୱ ବିହୀନ ସରକାର ସେତେବେଳେ ଅବଶ୍ୟ ଏହି ପ୍ରସ୍ତାବଟିକୁ ଗ୍ରହଣ କରି ନ ଥିଲେ, କିନ୍ତୁ ସରକାର 1922-1923ରେ ଗୋଟିଏ ବନ୍ୟା ଅନୁସନ୍ଧାନ କମିଟି ବସାଇ ଥିଲେ ଓ ତାଙ୍କ ଅଧୀନରେ ବହୁସଂଖ୍ୟକ ଇଞ୍ଜିନିୟର ଓ ଓଭରସିଅର ନିଯୁକ୍ତ ହୋଇ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ସଂବନ୍ଧରେ ବିବରଣୀ ସଂଗ୍ରହ କରିଥିଲେ। ଏଥିପାଇଁ ପ୍ରାୟ ସତୁରି ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ସିନା, ବନ୍ୟା ନିରାକରଣ ଲାଗି କୌଣସି ସ୍ଥାୟୀ ପଦକ୍ଷେପ ନିଆଯାଇ ପାରିଲା ନାହିଁ। ଶେଷରେ 1927ର ପ୍ରଳୟଙ୍କରୀ

ବନ୍ୟା ପରେ ସରକାର ୧୯୨୪ରେ ଗୋଟିଏ ବିଶେଷଜ୍ଞ ବନ୍ୟା କମିଟି ବସାଇଲେ। ତାଙ୍କ ବିବରଣୀ ମିଳିବା ପରେ ଅଧିକ ବିଶେଷଜ୍ଞ ଅନୁସନ୍ଧାନ ହୋଇ ପରିଶେଷରେ ହୀରାକୁଦ ବନ୍ଧ ନିର୍ମିତ ହେଲା। ସେତେବେଳକୁ ଗୋପବନ୍ଧୁ ଇହଧାମରେ ନ ଥିଲେ।

**ଲୁଣ ପୋକ୍ତାନି ସମସ୍ୟା**

ଓଡ଼ିଶା ଗୋଟିଏ ଉପକୂଳବର୍ତ୍ତୀ ରାଜ୍ୟ ଏବଂ କଟକ ପୁରୀ, ବାଲେଶ୍ୱର ଓ ଗଞ୍ଜାମ ପରି ଚାରିଗୋଟି ଜିଲା ବଙ୍ଗୋପ ସାଗର ତଟରେ ଅବସ୍ଥିତ। ବହୁ ପ୍ରାଚୀନ କାଳରୁ ଉପକୂଳବର୍ତ୍ତୀ ଅଞ୍ଚଳର ଲୋକେ ଉନ୍ମୁକ୍ତ ପ୍ରାନ୍ତର ପ୍ରଣାଳୀରେ ଲୁଣ ପୋକ୍ତାନି କରୁଥିଲେ କିନ୍ତୁ ଇଷ୍ଟ ଇଣ୍ଡିଆ କଂପାନୀ ଓଡ଼ିଶା ଶାସନ ଦାୟିତ୍ୱ ହାତକୁ ନେବା ପରେ ଲୋକଙ୍କର ଏହି ଅଧିକାରକୁ ଛଡ଼ାଇ ନେଇଥିଲେ ଏବଂ ସରକାର ଲବଣ ଉତ୍ପାଦନ ଉପରେ ଅବକାରୀ କର ବସାଇଲେ। ସରକାରଙ୍କ ବିନାନୁମତିରେ ଲୁଣ ପୋକ୍ତାନି ନିଷିଦ୍ଧ ହୋଇଥିଲା। ଗୋପବନ୍ଧୁ ଉପଲବ୍ଧି କଲେ ଯେ ଲୋକଙ୍କ ଠାରୁ ଏହି ପ୍ରାକୃତିକ ଅଧିକାର ଛଡ଼ାଇ ନିଆ ଯାଇଥିବାରୁ ସେମାନଙ୍କ ଦାରିଦ୍ର୍ୟ ବଢ଼ିଛି; ତେଣୁ ସେ ଲୁଣର ଅବାଧ ପୋକ୍ତାନି ବିଷୟରେ ଆନ୍ଦୋଳନ କଲେ। ଏହା ଛଡ଼ା ଲୁଣ ସାଧାରଣ ଲୋକଙ୍କର ଗୋଟିଏ ଦୈନିକ ଖାଦ୍ୟ ସାମଗ୍ରୀ ଥିଲା ଏବଂ ସରକାର ଅବକାରୀ କର ବସାଇ ଲୁଣ ଉତ୍ପାଦନ ଉପରେ ଏକଚାଟିଆ ଅଧିକାର ହାସଲ କରିଥିବାରୁ ଲୁଣର ଦର ବଢ଼ି ସାଧାରଣ ଲୋକଙ୍କୁ ବାଧୁଛି। ଲବଣ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ର ସୁଦୀର୍ଘ ପରଂପରା ଅଛି ଓ ଓଡ଼ିଶାର ବନ୍ଦର ମାନଙ୍କରୁ ବିଦେଶକୁ ଲୁଣ ରପ୍ତାନି ହେଉଥିବା ବିଷୟ ଇତିହାସରୁ ଜଣାପଡ଼େ। ଲୁଣ ପୋକ୍ତାନି କ୍ଷେତ୍ରରେ ଚିଲିକା ହ୍ରଦ, ବିଶେଷରେ ପାରିକୁଦ ବିଖ୍ୟାତ ଥିଲା। ଲୁଣ ଉତ୍ପାଦନ କରିବା ଅଧିକାର ଛଡ଼ାଇ ନିଆ ଯାଇଥିବାରୁ ଏ ଅଞ୍ଚଳର ଲୋକେ ବାରଂବାର ଦୁର୍ଭିକ୍ଷଗ୍ରସ୍ତ ହେଉଛନ୍ତି। ବାଲେଶ୍ୱରର ଲୋକେ ମଧ୍ୟ ଏହି କାରଣରୁ ଦୁର୍ଦ୍ଦଶା ଭୋଗୁଛନ୍ତି। ଏହାକୁ ଅନ୍ୟାୟ ବୋଲି ବିବେଚନା କରି ଲୁଣ ଉତ୍ପାଦନକୁ ସରକାରୀ ନିୟନ୍ତ୍ରଣରୁ ମୁକ୍ତ କରିବା ଉଦ୍ଦେଶ୍ୟରେ ଗୋପବନ୍ଧୁ ବିହାର ଓ ଓଡ଼ିଶା ବିଧାନ ପରିଷଦରେ ଗୋଟିଏ ପ୍ରସ୍ତାବ ଆଗତ କଲେ। ସେ ବକ୍ତୃତାରେ ବହୁ ପରିସଂଖ୍ୟାନ ତଥ୍ୟ ତଥା ପ୍ରାଚୀନ ଦଲିଲରୁ ଉଦ୍ଧୃତିମାନ ଦେଇ ବିଶଦ ଭାବରେ ପରିସ୍ଥିତି ବର୍ଣ୍ଣନା କରିଥିଲେ। ଏହା ଫଳରେ ସରକାର ଚିଲିକା ଅଞ୍ଚଳରେ ଲବଣ ଉତ୍ପାଦନର ପୁନରୁଦ୍ଧାର କରିବେ ବୋଲି ପ୍ରତିଶ୍ରୁତି ମିଳିଥିଲା। ଟାଟା ଓ ବିଲବର୍ଣ୍ଣ କଂପାନୀ ଏଠାରେ ଲୁଣ ଉତ୍ପାଦନ ଲାଗି ଗୋଟିଏ ଯୌଥ ବ୍ୟବସାୟ ପ୍ରତିଷ୍ଠା କରିବା ବିଷୟରେ ବିବରଣୀ ସଂଗ୍ରହ କରିଥିଲେ। ଗୋପବନ୍ଧୁଙ୍କ ଅନୁରୋଧରେ ଛୋଟଲାଟ ସାର ଏଡ୍ୱାର୍ଡ଼ ଗେଟ ଚିଲିକା ଅଞ୍ଚଳ ଗସ୍ତ କରି ଅବାଧ ଲୁଣ ପୋକ୍ତାନି କରିବା ଅଧିକାର ଫେରାଇ ଦେବାକୁ ଆଶ୍ୱସନା ଦେଇଥିଲେ, କିନ୍ତୁ ଦୁଃଖର କଥା ଯେ ୧୯୧୮ରେ ପ୍ରଥମ ବିଶ୍ୱଯୁଦ୍ଧ ଶେଷ ହେବାପରେ ପୁଣି ଲିଭରପୁଲରୁ ଲୁଣ ଆମଦାନି ଆରମ୍ଭ ହେଲା।

କଂପାନୀ ଦୁହେଁ ମଧ୍ୟ ବିବରଣୀ ସଂଗ୍ରହ କରିବା ପରେ ସରକାରଙ୍କୁ ଜଣାଇ ଦେଲେ ଯେ ଚିଲିକାରେ ଲୁଣ ଉତ୍ପାଦନ କଲେ ବେଶି ଖର୍ଚ୍ଚ ପଡ଼ିବ, ତେଣୁ ବିପୁଳ ପରିମାଣରେ ଲବଣ ଉତ୍ପାଦନ କରିବା ଲାଭଜନକ ହେବ ନାହିଁ। ସେ ଯାହାହେଉ ନା କାହିଁକି ଗୋପବନ୍ଧୁଙ୍କ ଉଦ୍ୟମ ଯୋଗୁ 1931ର ଗାନ୍ଧି-ଇରଉଇନ ଚୁକ୍ତି ଦ୍ୱାରା ନିଜ ଖାଇବା ଲାଗି ଲୁଣ ଉତ୍ପାଦନ କରିବା ଅଧିକାର ଓଡ଼ିଶାର ଉପକୂଳବର୍ତ୍ତୀ ଲୋକଙ୍କୁ ମିଳିଥିଲା; ସେମାନେ ମଧ୍ୟ ମୁଣ୍ଡ ବୋଝରେ ନେଇ ଆଖପାଖ ଅଞ୍ଚଳରେ ଲୁଣ ବିକ୍ରି କରିବା ଅଧିକାର ପାଇଲେ।

**ଶିକ୍ଷା ସମସ୍ୟା**

ଗୋପବନ୍ଧୁ ଶିକ୍ଷା ବିଷୟରେ ନିଜ ନୂତନ ଚିନ୍ତାଧାରାକୁ ସତ୍ୟବାଦୀ ବିଦ୍ୟାଳୟ ମାଧ୍ୟମରେ କାର୍ଯ୍ୟକାରୀ କରିବା ଲାଗି ଉଦ୍ୟମ କରିଥିଲେ। ଏହା ଅବଶ୍ୟ ସତ୍ୟ ଯେ ଏହି ସ୍କୁଲଟି 1921ରେ ଗୋଟିଏ ଜାତୀୟ ବିଦ୍ୟାଳୟରେ ପରିଣତ ହେବା ଓ କିଛି କାଳ ପରେ ସଂପୂର୍ଣ୍ଣ ରୂପେ ବନ୍ଦ ହୋଇଯିବା ଫଳରେ ତାଙ୍କ ଚିନ୍ତାଧାରା ସାରା ପ୍ରଦେଶରେ ଲୋକପ୍ରିୟ ହୋଇ ପାରି ନ ଥିଲା। ଏହି ବିଫଳତା ତାଙ୍କୁ ନିରୁତ୍ସାହିତ କରି ନ ଥିଲା ଓ ସେ ବିଧାନ ପରିଷଦ ମାଧ୍ୟମରେ ନିଜ ଚିନ୍ତାଧାରା ପ୍ରତି ସରକାରୀ ଅନୁମୋଦନ ଲାଭ କରିବାକୁ ଉଦ୍ୟମ କରିଥିଲେ। ସେ ବିଚାରୁ ଥିଲେ ଯେ ଗୋଟିଏ ଆଧୁନିକ ବିଦ୍ୟାଳୟ ପ୍ରତିଷ୍ଠା ଲାଗି ବ୍ୟୟବହୁଳ କୋଠାବାଡ଼ି ଅନାବଶ୍ୟକ; ଏହା ମଧ୍ୟ ସେ ସତ୍ୟବାଦୀ ବନ ବିଦ୍ୟାଳୟରେ ପରୀକ୍ଷା କରି ଦେଖାଇ ଦେଇ ଥିଲେ। କୋଠାବାଡ଼ି ଓ ଯନ୍ତ୍ରପାତି ବିଷୟରେ ଥିବା ସରକାରୀ ନିୟମାବଳୀକୁ କୋହଳ କରିବାଲାଗି ସେ ବିଧାନ ପରିଷଦରେ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ। ଏହି ଉପଲକ୍ଷେ ଦେଇଥିବା ବକ୍ତୃତାରେ ସେ ଦେଖାଇ ଦେଇଥିଲେ ଯେ କୋଠାଘର ଛାତ୍ରମାନଙ୍କ ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ ପ୍ରତି ଅନୁକୂଳ ନୁହେଁ। ସ୍ୱାସ୍ଥ୍ୟ ପାଇଁ ଡାକ୍ତରମାନେ ମୁକ୍ତବାୟୁ ସେବନ ବିଷୟରେ ସୁପାରିଶ କରନ୍ତି କିନ୍ତୁ ଶିକ୍ଷା ବିଭାଗର ଅନୁଜ୍ଞା ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା ନିୟମର ବ୍ୟତିକ୍ରମ କରୁଛି। ଭାରତ ଗୋଟିଏ ଗ୍ରାମବହୁଳ ଦେଶ; ପ୍ରତି ଗ୍ରାମରେ ନଡ଼ିଆ ଓ ଆମ୍ବ ବଗିଚା ଅଛି। ପୂର୍ବକାଳର ଗୁରୁକୁଳ ଗୁଡ଼ିକ ପ୍ରାକୃତିକ ପରିବେଶ ଭିତରେ ସ୍ଥାପିତ ହେଉଥିଲା, ଆମେ ସେହି ଆଦର୍ଶର ପୁନରୁଦ୍ଧାର ନ କରିବାର କୌଣସି କାରଣ ନାହିଁ। ପାଖରେ ବର୍ଷା ଋତୁରେ ବ୍ୟବହୃତ ହେବା ଲାଗି ଗୋଟିଏ ଘର ଥାଇ ଏହି ପରି ବଗିଚାରେ ସ୍କୁଲ ଖୋଲିବା ଲାଗି ଶିକ୍ଷା ବିଭାଗ ଅନୁମତି ଦେଲେ ଦ୍ରୁତଗତିରେ ଶିକ୍ଷା ପ୍ରସାର ହୋଇପାରନ୍ତା। ଏ ସଂକ୍ରାନ୍ତରେ ସତ୍ୟବାଦୀର ବନ ବିଦ୍ୟାଳୟ ପରିଦର୍ଶନ ପୁସ୍ତିକାରେ ସାର ଏଡୁଆର୍ଡ଼ ଗେଟ ଲେଖିଥିବା ମନ୍ତବ୍ୟକୁ ଗୋପବନ୍ଧୁ ଉଲ୍ଲେଖ କରିଥିଲେ। ସାର୍ ଏଡୁଆର୍ଡ଼ ଲେଖିଥିଲେ, ''ଜନାକୀର୍ଣ୍ଣ ଶ୍ରେଣୀ ପ୍ରକୋଷ୍ଠ ବଦଳରେ ଉନ୍ମୁକ୍ତ ବାୟୁରେ ଶିକ୍ଷାଦାନ ପଦ୍ଧତି ଦେଖି ପ୍ରୀତ ହେଲି। ମୋର ବିଶ୍ୱାସ ଯେ ଏହା ଫଳରେ ଛାତ୍ରମାନେ ମୁକ୍ତବାୟୁର ଉପକାରିତା ବିଷୟରେ ଶିଖିବେ ଏବଂ କବାଟ ଓ ଝରକା

ବନ୍ଦ ରଖି ମୁକ୍ତ ବାୟୁ ପ୍ରବେଶ କରିବାକୁ ନ ଦେବା ଅଭ୍ୟାସ ଯୋଗୁ ବିଭିନ୍ନ ପ୍ରାନ୍ତରେ ଯେପରି ଯକ୍ଷ୍ମାରୋଗ ବଢୁଛି, ସେହି ସାଧାରଣ ଅଭ୍ୟାସକୁ ଛାଡ଼ିବା ଲାଗି ନିଜ ବନ୍ଧୁବାନ୍ଧବ ମାନଙ୍କୁ ପରାମର୍ଶ ଦେବେ।''

## ଅନ୍ୟାନ୍ୟ କାର୍ଯ୍ୟ

ଗୋପବନ୍ଧୁଙ୍କ ଚେଷ୍ଟା ଯୋଗୁ କଟକ ରେଭେନ୍‌ସା କଲେଜରେ ପୁଣି ଥରେ ଇଂରେଜୀରେ ଏମ. ଏ. ଓ ଆଇନ ଶ୍ରେଣୀ ଖୋଲିଲା। କଟକରେ ଗୋଟିଏ ଇଞ୍ଜିନିୟରିଂ ବା ଯାନ୍ତ୍ରିକ ବିଦ୍ୟାଳୟ ଓ ପୁରୀରେ ଗୋଟିଏ ସଂସ୍କୃତ କଲେଜ ସ୍ଥାପିତ ହେଲା ଏବଂ ସ୍କୁଲ ଓ କଲେଜରେ ପଢୁଥିବା ଛାତ୍ରମାନଙ୍କ ମଧ୍ୟରୁ ଏକ ଦଶମାଂଶ ଛାତ୍ରଙ୍କୁ ବିନା ବେତନରେ ପଢ଼ିବା ଲାଗି ସୁବିଧା ଦେବା ବ୍ୟବସ୍ଥା ହେଲା। ଆଇ. ସି. ଏସ. ପରୀକ୍ଷା ଦେବା ଲାଗି ଓଡ଼ିଶାରୁ ପ୍ରତିବର୍ଷ ଜଣେ ଲେଖାଁଏ ଛାତ୍ର ବିଲାତ ଯିବା ଲାଗି ସେ ବନ୍ଦୋବସ୍ତ କରାଇ ଥିଲେ।

ଏତଦ୍‌ବ୍ୟତୀତ ସବୁ ସମୟରେ ପୁରୀକୁ ବହୁସଂଖ୍ୟକ ତୀର୍ଥଯାତ୍ରୀ ଆସୁଥିବାରୁ ସେଠାରେ ବର୍ଷ ତମାମ ପାଇପ୍ ପାଣି ଯୋଗାଇବା ବ୍ୟବସ୍ଥା କରାଇଥିଲେ। ସେ ମଧ୍ୟ ସମବାୟ ଆନ୍ଦୋଳନର ପ୍ରସାର ପାଇଁ ଉଦ୍ୟମ କରିଥିଲେ, କାରଣ ସେ ବିଶ୍ୱାସ କରୁଥିଲେ ଯେ ଯେଉଁ କୁଟୀର ଶିଳ୍ପ ପାଇଁ ଓଡ଼ିଶା ଦିନେ ଖ୍ୟାତି ଲାଭ କରିଥିଲା, ତାହାର ପୁର୍ନଜୀବନ ପାଇଁ ସମବାୟ ଆନ୍ଦୋଳନ ଏକମାତ୍ର ପନ୍ଥା ଥିଲା। ସେ ମଧ୍ୟ ଜିଲ୍ଲା ବୋର୍ଡ଼ ଗୁଡ଼ିକରେ ପଦାଧିକାରୀ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ପରିବର୍ତ୍ତେ ନିର୍ବାଚିତ ବେସରକାରୀ ସଭାପତି ବ୍ୟବସ୍ଥା କରିଥିଲେ। ସେ ଜଙ୍ଗଲ ନିୟମାବଳୀ ଗୁଡ଼ିକର କଠୋରତାକୁ କୋହଳ କରାଇ ପାରିଥିଲେ ଏବଂ ବହୁସଂଖ୍ୟକ ମଧ୍ୟ ଭର୍ଣ୍ଣାକୁଲର ବିଦ୍ୟାଳୟକୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପରିଣତ କରାଇବାରେ କୃତକାର୍ଯ୍ୟ ହୋଇଥିଲେ।

ଗୋପବନ୍ଧୁ କୌଣସି ଦଳଭୁକ୍ତ ନ ହୋଇ ସ୍ୱାଧୀନ ଭାବରେ ବିଧାନ ପରିଷଦରେ କାର୍ଯ୍ୟ କରୁଥିଲେ। ସେ ନିଷ୍ପେଷିତଙ୍କ କଲ୍ୟାଣ ପାଇଁ ସୁପାରିସ କରି ବିଧାନ ପରିଷଦର ସଭ୍ୟମାନଙ୍କୁ ପ୍ରଭାବିତ କରି ପାରିବାର କାରଣ ହେଲା; ସେ ନିଜ କର୍ତ୍ତବ୍ୟ ସଂପାଦନରେ ନିଷ୍ଠାପର ଓ କର୍ମଠ ଥିଲେ। ଥରେ ସିଂହଭୂମିର ଡେପୁଟୀ କମିଶନର ଶ୍ରୀଯୁକ୍ତ ସ୍କଟ ଗୋପବନ୍ଧୁଙ୍କୁ ଭେଟି କହିଥିଲେ, ''ଶ୍ରୀ ଦାସ, ମୁଁ ଭାରତବର୍ଷରେ ଗତ ସତର ବର୍ଷ ହେଲା ରହିଛି। ମୁଁ କମନ୍ ସଭାରେ ବଡ଼ ବଡ଼ ବ୍ୟବସ୍ଥାପକ ମାନଙ୍କ ଭାଷଣ ଶୁଣିଛି, ବିଶେଷ କରି ଇଂଲଣ୍ଡର ଜଣେ ପ୍ରଧାନମନ୍ତ୍ରୀ ଶ୍ରୀ ଏ.କେ. ବାଲଫୋରଙ୍କ ବକ୍ତୃତା ମୋର ମନେ ଅଛି। ଆପଣଙ୍କ ଭାଷଣ ଶୁଣିବା ବେଳେ ମୋର ତାଙ୍କରି କଥା ମନେ ପଡ଼େ। କଂଗ୍ରେସ ଲୋକ ହିସାବରେ ଆପଣ ବର୍ତ୍ତମାନ ବ୍ରିଟିଶ ସାମ୍ରାଜ୍ୟବାଦର ଶତ୍ରୁ, କିନ୍ତୁ ମୁଁ ଆପଣଙ୍କୁ କହିପାରେ ଯେ ଆମେ ଇଉରୋପୀୟମାନେ ଆପଣଙ୍କ ପରି ନିଷ୍ଠାପର ଓ ଅନୁରକ୍ତ ଦେଶପ୍ରେମୀଙ୍କୁ ସମ୍ମାନ କରୁ।'' ପରିଷଦରେ ସଭାପତିତ୍ୱ କରୁଥିବା ଛୋଟ ଲାଟ ସାର ଏଡୁଆର୍ଡ଼ ଗେଟ ଗୋପବନ୍ଧୁଙ୍କ ସହିତ ଜଣେ ସହକର୍ମୀ

ଭାବରେ ଘନିଷ୍ଠ ବନ୍ଧୁତା ପ୍ରତିଷ୍ଠା କରିଥିଲେ। ସେ ଦୁହେଁ ପରସ୍ପର ନାଁ ଧରି ସମ୍ବୋଧନ କରୁଥିଲେ।

1919 ଭାରତ ଶାସନ ଆଇନ ଅନୁସାରେ ପ୍ରବର୍ତ୍ତିତ ମଣ୍ଟ-ଫୋର୍ଡ଼ ଶାସନ ସଂସ୍କାର 1921ରୁ କାର୍ଯ୍ୟକାରୀ ହୋଇଥିଲା ଏବଂ ପ୍ରାଥମିକ ପଦକ୍ଷେପ ସ୍ୱରୂପ 1920 ନଭେମ୍ବର ମାସରେ ପ୍ରାଦେଶିକ ବିଧାନ ପରିଷଦ ପାଇଁ ନିର୍ବାଚନ ହେଲା। 1920 ସେପ୍ଟେମ୍ବର ମାସରେ କଲିକତାଠାରେ ଜାତୀୟ କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନ ଲାଲା ଲଜପତ୍ ରାୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇ ଅସହଯୋଗକୁ ନୀତି ରୂପେ ଗ୍ରହଣ କରି ସାରିଥିଲା। ତେଣୁ ଗୋପବନ୍ଧୁ ନିର୍ବାଚନରେ ପ୍ରାର୍ଥୀ ହେବାକୁ ମନା କଲେ। ତାଙ୍କ ସ୍ଥାନରେ ଓଡ଼ିଶାର ନଗର ପାଳିକାମାନଙ୍କ ତରଫରୁ ମଧୁସୂଦନ ଦାସ ବିଧାନ ପରିଷଦକୁ ନିର୍ବାଚିତ ହେଲେ।

# ଉତ୍କଳ ସମ୍ମିଳନୀ

ନିଜ 'ସତ୍ୟବାଦୀ' ପତ୍ରିକାର ଶେଷ ଖଣ୍ଡରେ ସେ ଉତ୍କଳ ସମ୍ମିଳନୀ ଓ ଭାରତର ଜାତୀୟତା ସଂବନ୍ଧରେ ଲେଖିଥିଲେ, ''ଉତ୍କଳ ସମ୍ମିଳନୀର 'ପ୍ରାପ୍ତ' ଷୋଡ଼ଶ ବର୍ଷ ହୋଇଗଲା । ବହୁ ଦିନ ସେ ମୋଟେ ରାଜନୀତି ଚର୍ଚ୍ଚା କରି ନ ଥିଲା ଏବଂ ରାଜା, ଚାକିରିଆମାନେ ସମ୍ମିଳନୀରେ ଯୋଗ ଦେଉଥିଲେ । ଦ୍ୱାର କିଳି ବର୍ଷକେ ଥରେ ବେଶ ବାନ୍ଧି ଓଡ଼ିଆମାନେ ଘର ଭିତରେ ଗର୍ଜନ ତର୍ଜନ କରି କାର୍ଯ୍ୟକ୍ଷେତ୍ରକୁ ଫେରୁଥିଲେ । ଏ ତ ହେଲା, ବକ୍ତୃତା ଅଭ୍ୟାସ କରିବାର ଯୁଗ; କାଗଜରେ ପ୍ରସ୍ତାବ ଲେଖି ଶିଖିବାର ଉଦ୍ୟମ । ବାସ୍ତବିକ ସିଂହଭୂମିରେ ଓଡ଼ିଆ ପ୍ରଚାର ଓ କେତେକ ସ୍ଥାନରେ କପାଚାଷ କରାଇବା ଛଡ଼ା ସମ୍ମିଳନୀ ପ୍ରସ୍ତାବର ଅନ୍ୟ କୌଣସି ବିଶେଷ କ୍ରିୟା ହୋଇଛି ବୋଲି ମନେ ହୁଏ ନାହିଁ । ପୁରୀ ଦୁର୍ଭିକ୍ଷ ଘେନି କିଛି ଅନୁସନ୍ଧାନ କାର୍ଯ୍ୟ ହୋଇଛି ।''

ମାତ୍ର ଏସବୁ ଦ୍ୱାରକିଳା ଆଲୋଚନା ଭିତରେ ଜୀବନର ବିକାଶ କଥା କିଞ୍ଚିତ ଆଲୋଚନା ହେଉଥିଲା । ହଠାତ୍ 1918ରେ ମଣ୍ଟେଗୁ ଚେମସ୍ ଫୋର୍ଡ଼ ରିପୋର୍ଟ ଘେନି ଦେଶରେ ତର୍କ ବିତର୍କ ଲାଗିଲା ଏବଂ ସେତିକି ବେଳେ ସମ୍ମିଳନୀର ରାଜନୀତିକ ଜାଗରଣ ଦେଖାଗଲା । ସେହିଦିନଠାରୁ ସମ୍ମିଳନୀ ରାଜନୀତିକ କି ନୁହେଁ ଏ ବିଷୟ ଘେନି ତର୍କ ବିତର୍କ ଚାଲିଛି ଏବଂ ଦୁଇ ବର୍ଷ ହେଲା ସଭାପତିମାନେ ସ୍ପଷ୍ଟ ଭାବରେ ଏହାକୁ ରାଜନୀତିକ ଓ ଭାରତ ଜାତୀୟତାର ଅଙ୍ଗ କରିବାକୁ ହେବ ବୋଲି କହିଥିଲେ ହେଁ ଏବଂ ପଞ୍ଜାବ ଲୋକହତ୍ୟା ସଂବନ୍ଧରେ ପ୍ରସ୍ତାବ ଗୃହୀତ ହୋଇଥିଲେ ମଧ୍ୟ ଏହା ରାଜନୀତିକ କି ନୁହେଁ, ଅନେକେ ଏ ବିଷୟରେ ସ୍ଥିର କରି କହି ପାରୁ ନାହାନ୍ତି ।

ଅବଶ୍ୟ ସମୁଦ୍ରର ଜୁଆର ଭଟ୍ଟା ଯୋଗୁ ତରଙ୍ଗସୀମା ଠିକ୍ ନ ରହିଲା ପରି ରାଜନୀତିର ସୀମା ଏ ଦେଶରେ କେତେବେଳେ କେଉଁ ଠାରେ ରହୁଅଛି, ତାହା ଜାଣିବା ଟିକିଏ ଦୁଷ୍କର । ପୁଣି ସ୍ୱଦେଶୀ ପାଇଁ ସଭା କରିବା, କେତେବେଳେ ଘୋର ରାଜନୀତିକ ସମସ୍ୟା ? ଯୁଦ୍ଧଋଣ ପାଇଁ ଲୋକଙ୍କୁ ଏପରିକି ଛାତ୍ରମାନଙ୍କୁ ମଧ୍ୟ ଜୋର ଜବରଦସ୍ତି କରିବାରେ ରାଜନୀତି ନାହିଁ । ବର୍କଙ୍କ ଫ୍ରେଞ୍ଚ ରିଭଲ୍ୟୁଶନ (Burke's French Revolution) ପଢ଼ିବାରେ ରାଜନୀତି ଅଛି ମାତ୍ର ଲି ଓ୍ୟାର୍ଣ୍ଣରଙ୍କ ସିଟିଜେନ ଅଫ ଇଣ୍ଡିଆ (Lee Warner's Citizen of India) ବା

ଏନ. ଏନ. ଘୋଷଙ୍କ 'ଇଂଲଣ୍ଡସ୍ ଓ୍ୱାର୍କ ଇନ ଇଣ୍ଡିଆ (N. N. Ghose's England's Work in India) ପଢ଼ିବାରେ ରାଜନୀତି ଆଦୌ ନାହିଁ। ଏସବୁ ଜଟିଳ ସମସ୍ୟାର ସମାଧାନ ଆମ୍ଭମାନଙ୍କର କର୍ମ ନୁହେଁ।

ତେବେ ରାଜନୀତି କଥା ସ୍ୱତନ୍ତ୍ର। ଉତ୍କଳ ସମ୍ମିଳନୀ ଭାରତର ସମୂହ ଜାତୀୟତାରେ ଯୋଗ ଦେବ କି ନା? ଏ ପ୍ରଶ୍ନ ଶୁଣୁ ଶୁଣୁ ହୁଏତ ଆମ୍ଭମାନଙ୍କ ଭିତରୁ ଅନେକେ ଚମକି ପଡ଼ିବେ, ମାତ୍ର ଚମକି ପଡ଼ିବାର କିଛି କାରଣ ନାହିଁ, ସମ୍ମିଳନୀର ପ୍ରାପ୍ତ ବୟସ ହୋଇଅଛି। ଆଉ ଜାତୀୟ ଜୀବନରେ ଏକଘରକିଆ ବୃତ୍ତି ଚଳିବ ନାହିଁ। ପ୍ରାପ୍ତ ବୟସରେ ପ୍ରାଣର ଅବରୋଧ ଯୁବକ ପାଇଁ ଅସହ୍ୟ। ଅତଏବ ଯୁବକର ଭାବ ଗତି ଲକ୍ଷ୍ୟ କରି ତାହାର ଜୀବନ କ୍ରିୟାରେ ତାକୁ ସାହାଯ୍ୟ କରିବାକୁ ହେବ।

ଭାରତରେ ଆନ୍ଦୋଳନ ପରେ ଆନ୍ଦୋଳନ ଚାଲିଛି। ଉତ୍କଳ ଦ୍ୱାରରେ ଧକ୍କା ବାଜୁଛି। ଉତ୍କଳ ଯୁବକର ପ୍ରାଣରେ ଥରେ ସ୍ପନ୍ଦନ ଆସୁଛି। କିନ୍ତୁ ଅଭିଭାବକମାନେ କହୁଛନ୍ତି, ହଁ, ସାବଧାନ, ଓଡ଼ିଶାର ସେ ସବୁ କାର୍ଯ୍ୟ ପାଇଁ ସମୟ ଆସିନାହିଁ। ପୁଣି ଯେତେବେଳେ ସମୟ ଆସନ୍ତା ବୋଲି ଆମେ ବିଚାରନ୍ତୁ, ତା ପୂର୍ବରୁ ଜାତୀୟ ଆନ୍ଦୋଳନ ଆହୁରି ଏକ ନୂଆ ପ୍ରେରଣା ଘେନି ହାଜର । ପୁଣି "ସମୟ ଆସିନାହିଁ"। ଏପରି କେତେ ଦିନ ସମୟ ନ ଆସିବ, କେହି କହିବେ କି? ଯାହାର ଥରେ ସମୟ ଆସି ନାହିଁ, ତାହାର ବୋଧହୁଏ କେବେ ସମୟ ଆସିବ ନାହିଁ। "ସମୟ ଆସିନାହିଁ" ଏ କଥାର ଅର୍ଥ ବା କ'ଣ? ହୁଏତ ଆମ୍ଭେ ବର୍ତ୍ତମାନ ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ ଯନ୍ତ୍ରଣା ପାଇବା। ଏପରି ସମୟକୁ ଆମେମାନେ ଚାକି ରହିଛୁ, ଯେତେବେଳେ ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ ଆଉ ଆଗ ଗୋଡ଼ରେ କଣ୍ଟା ବାଜିବ ନାହିଁ ଅଥଚ ଜାତୀୟ ମୁକ୍ତିର 'ପାରୁଶ'ଟା ହାତେ ହାତେ ମିଳିଯିବ। ଏଇ ତ ଶେଷ କଥା। ଏପରି ସମୟ ପୃଥିବୀର କେଉଁ ଜାତିର କେବେ ଭଲା ଆସିଛି? ଯେତେବେଳେ କୌଣସି ପରାଧୀନ ଜାତି ଜାତୀୟ ମୁକ୍ତିପାଇଁ ଯତ୍ନ କରିବେ, ସେତେବେଳେ ଜଗତର ସମସ୍ତ କଷ୍ଟ ସମସ୍ତ ଯନ୍ତ୍ରଣା ପାଇଁ ଛାତି ପତାଇ ବାହାରିବାକୁ ହେବ। ତାହା ହେଲେ ବୁଝାଯିବ, ସମୟ ସବୁବେଳେ ଆସି ଦୁଆରେ ପହଞ୍ଚୁଛି। ଯେଉଁମାନେ ଜାତିର ମୁକ୍ତି ପାଇଁ କର୍ମ କରୁଛନ୍ତି, ସେମାନେ ବହୁ କଷ୍ଟ, ବହୁ ଯନ୍ତ୍ରଣା ସହୁଛନ୍ତି। କେତେ ଯନ୍ତ୍ରଣା ସହିବାକୁ ଆମର ବଳ ଅଛି, ଏବଂ ଏହି ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ କେତେ ଯନ୍ତ୍ରଣା ଠିକ୍ ମିଳିବ, ତାହା ଆମେ ସହିପାରିବା କି ନା, ଏ କଥା ମଧ ବିଚାରି ହିସାବ କିତାବ୍ କରି କେହି ଜାତୀୟ ଆନ୍ଦୋଳନରେ ଯୋଗ ଦିଅନ୍ତି ନାହିଁ। "ସମୟ ଆସିନାହିଁ" ଏ କେବଳ ଅକର୍ମା ଭୀରୁର ବଚନ। ଏ ଗୋଟିଏ ଦାୟିତ୍ୱର ମୋହ। ଶୀଘ୍ର ଭୟ ଛାଡ଼ି ଜାତୀୟ ସ୍ରୋତରେ ଭାସିବାକୁ ହେବ।

କେଉଁ କାମରେ, କେଉଁ ଆନ୍ଦୋଳନ ଫଳରେ କେତେ ଯନ୍ତ୍ରଣା ମିଳିବ, ତାହାର କୌଣସି ଇୟତ୍ତା ବା ସୀମା ନିର୍ଦ୍ଦେଶ କେହି କରି ପାରିବେ ନାହିଁ। ହୋଇପାରେ କୌଣସି ଜାତୀୟ ଆନ୍ଦୋଳନ ଫଳରେ ଓଡ଼ିଶାର ସତ୍ତା ପର୍ଯ୍ୟନ୍ତ ଲୋପ ପାଇଯିବ। ସେଥିପାଇଁ ମଧ୍ୟ ପ୍ରସ୍ତୁତ ହେବାକୁ ହେବ। ବାସ୍ତବିକ ଓଡ଼ିଶାର ସତ୍ତା ଲୋପକରି ଯଦି ଭାରତର ଜାତୀୟତା ରକ୍ଷା କରାଯାଇ ପାରେ, ତେବେ ସେ ଗତି ସ୍ପୃହଣୀୟ ନୁହେଁ କି? ତାହାକୁ ତ ଓଡ଼ିଶାର ଭାଗ୍ୟ ବୋଲି ବିଚାର କରିବାକୁ ହେବ। ଜାତୀୟ କଲ୍ୟାଣ କଳ୍ପେ ଓଡ଼ିଶାର ଏ ଆତ୍ମଦାନ କେହି ନ ଜାଣନ୍ତୁ, କିନ୍ତୁ ଏ "ଦଧିଚୀର ଆତ୍ମଦାନ" ସ୍ୱର୍ଗଲୋକରେ ମହୀୟାନ। ତେବେ ଆଉ ସମୟ ଆସିବାର ପ୍ରଶ୍ନ କେଉଁଠାରେ?"

**ଦେଶମିଶ୍ରଣ ଦାବୀ**

ସାରାଜୀବନ ଗୋପବନ୍ଧୁ ସମ୍ମିଳନୀ କାର୍ଯ୍ୟ ସହିତ ସଂପୃକ୍ତ ଥିଲେ। ସେ ନିଜେ ଜଣେ ବିରାଟ ବ୍ୟକ୍ତି ଥିବାରୁ ଓଡ଼ିଆ ଜାତୀୟତାର ପୁରୋଧାମାନଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା। ସମ୍ମିଳନୀର ପ୍ରଧାନ ଉଦ୍ୟୋକ୍ତା ଥିଲେ ମଧୁସୂଦନ ଦାସ ଓ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ। ଗୋପବନ୍ଧୁଙ୍କର ମଧୁବାବୁଙ୍କ ସହିତ ବନ୍ଧୁତା ଥିଲା; ସେ ଦିନାକେତେ ମହାରାଜାଙ୍କ କର୍ମଚାରୀ ଥିଲେ। ସେ ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟକୁ ସମ୍ମିଳନୀର ଗୋଟିଏ ଅନୁପୂରକ ଅନୁଷ୍ଠାନ ରୂପେ ବିବେଚନା କରି ପ୍ରତ୍ୟେକ ଅଧିବେଶନକୁ ଶିକ୍ଷକମାନଙ୍କୁ ପ୍ରତିନିଧି ରୂପେ ଓ ଛାତ୍ରମାନଙ୍କୁ ସ୍ୱେଚ୍ଛାସେବକ ଭାବରେ ପଠାଉଥିଲେ। 1918 ରେ କଟକ ଠାରେ ଉତ୍କଳ ସମ୍ମିଳନୀର ଯେଉଁ ଅଧିବେଶନ ହୋଇଥିଲା, ସେଥିରେ ଗୋପବନ୍ଧୁ କେତେଜଣ ଶିକ୍ଷକ ଓ ଚାଳିଶ ଜଣ ଛାତ୍ର-ସ୍ୱେଚ୍ଛାସେବକଙ୍କ ସହିତ ଯୋଗ ଦେଇଥିଲେ। ସ୍ୱେଚ୍ଛାସେବକମାନଙ୍କ ନେତୃତ୍ୱ ଗ୍ରହଣ କରି ଆଚାର୍ଯ୍ୟ ହରିହର ଦାଶ ସ୍ୱେଚ୍ଛାସେବକ ଶିବିରରେ ସେମାନଙ୍କ ସାଙ୍ଗରେ ରହୁଥିଲେ। ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶ ପ୍ରତିନିଧି ଶିବିରରେ ଥିଲେ। ନୀଳକଣ୍ଠ ଓ ଗୋଦାବରୀଶ ଉଭୟ ବିଷୟ ନିର୍ବାଚନ ସମିତିର ସଭ୍ୟ ଥିଲେ ଏବଂ ତିନିଜଣ ଯାକ ପ୍ରତିନିଧି ନିଜ ବାଗ୍ମିତା ଦ୍ୱାରା ଶ୍ରୋତାବର୍ଗଙ୍କୁ ମୁଗ୍ଧ କରିଥିଲେ। ଏହି ସମ୍ମିଳନୀରେ ଗୋପବନ୍ଧୁ ଦେଶ ମିଶ୍ରଣ ପ୍ରସ୍ତାବ ଉପରେ ଦେଇଥିବା ଭାଷଣରେ କହିଥିଲେ, "ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ଏକ ଶାସନାଧୀନ କରିବା ବିଷୟକ ପ୍ରସ୍ତାବ ନୂଆ ନୁହେଁ। ସମ୍ମିଳନୀ ଆରମ୍ଭ ହେବା ଦିନ ଠାରୁ ଗତ ତେର ବର୍ଷ ହେଲା ଆମେ ଏହି ଆନ୍ଦୋଳନ କରି ଆସୁଛୁ। ଖାଲି ତେର ବର୍ଷ କାହିଁକି, ତେର ଦୁଣେ ଛବିଶ ବା ଗତ ତିରିଶ ବର୍ଷ ହେଲା ଗଞ୍ଜାମ ଜିଲ୍ଲା ଲୋକେ ଏହି ଆନ୍ଦୋଳନ ଚଳାଇ ଆସିଛନ୍ତି। ଗଞ୍ଜାମ, ପୁରୀ, ସମ୍ବଲପୁର, ସିଂହଭୂମି, ଏପରି କି ପ୍ରତ୍ୟେକ ଓଡ଼ିଆଭାଷୀ ଅଞ୍ଚଳରେ ଏହି ଆନ୍ଦୋଳନ ଚାଲିଥିଲେ ହେଁ କିଛି ଫଳ ଫଳି ନାହିଁ। କେତେକ କହୁଛନ୍ତି, ଆମ ଆନ୍ଦୋଳନରେ ଉଷ୍ମତା ନାହିଁ ବୋଲି କିଛି ହେଉ ନାହିଁ। କିନ୍ତୁ ଆମ ଆନ୍ଦୋଳନ ସାଧାରଣ ଢଙ୍ଗରେ ଚାଲିଛି। ଆମେ କଲେକ୍ଟରଙ୍କ ଠାରୁ ଆରମ୍ଭ କରି କମିଶନର, ଛୋଟଲାଟ ଓ ବଡ଼ଲାଟଙ୍କ

ପର୍ଯ୍ୟନ୍ତ ଆବେଦନ ଓ ନିବେଦନ କରି ଆସୁଛୁ। ଆମ ଆନ୍ଦୋଳନରେ ଆଉ କି ଉଷ୍ମତା ଦରକାର, ମୁଁ ବୁଝି ପାରୁନି। ତୁମେ ସବୁ ଜାଣ, ମହାଦେବଙ୍କୁ ଦେଖିବାପାଇଁ ତାଙ୍କ ବୃଷଭ ପଛ ଆଡ଼େ ଠିଆ ହୋଇ ପାଟି କରିବାକୁ ପଡ଼ିବ। ଆମେ କଲେକ୍ଟର, କମିଶନର ଓ ଛୋଟଲାଟଙ୍କୁ ନିବେଦନ କଲେ ହେଁ ମହାଦେବଙ୍କୁ ଦେଖା କରି ପାରିଲେ ନାହିଁ। ସିଂହଦ୍ୱାରର ଗରୁଡ଼ ଖମ୍ଭ ପାଖରେ ଠିଆ ହୋଇ ଜଗନ୍ନାଥଙ୍କୁ ଭକ୍ତମାନେ ପୂଜା କଲା ପରି ଆମେ ବି ଗରୁଡ଼ମାନଙ୍କୁ ପୂଜା କରିଛେ କିନ୍ତୁ ଆମ ପୂଜା ପ୍ରଭୁଙ୍କ କାନରେ ପଡ଼ି ପାରି ନାହିଁ। ଏବେ ମହାମହିମ ସମ୍ରାଟଙ୍କ ଚଳନ୍ତି ପ୍ରତିମା, ତାଙ୍କ ଭାରତ ମନ୍ତ୍ରୀ ଭାରତ ଗସ୍ତ କରୁଛନ୍ତି। ଆମେ ଭାବିଥିଲୁ, ଭାଗ୍ୟଲକ୍ଷ୍ମୀ ଆମକୁ ଚାହିଁ ହସିବେ। ଅନେକ ଲୋକ କହିଲେ, ଓଡ଼ିଶା ସ୍ୱାୟତ୍ତ ଶାସନ ଆନ୍ଦୋଳନରେ ଭାଗ ନେଇ ନାହିଁ। ସେମାନେ କହୁଛନ୍ତି, ଟୀକା ନିଆ ଚୁଟୀ ବିହୀନ ମଧୁସୂଦନ, ବ୍ରଜସୁନ୍ଦର ଆଦି କେତେଜଣ ଇଂରେଜ ପାଠୁଆ ଲୋକ ଆନ୍ଦୋଳନ କରିଥିଲେ। ହେଲା ଏବେ, ଚାଲ ଲୋକଙ୍କ ନାଡ଼ି ଚିପିବା। ଆମେ ସରକାରଙ୍କୁ ଦେଖାଇ ଦେବା ଯେ ନିରକ୍ଷର ଚାଷୀ, ଏପରିକି ନୀଚ ଜାତିର ଲୋକ ସମସ୍ତେ ମିଶି ଏକତ୍ରୀକରଣ ଚାହୁଁଛନ୍ତି। କଟକ, ଗଞ୍ଜାମ, ସମ୍ବଲପୁର, ସିଂହଭୂମି ଓ ଅନ୍ୟ ସ୍ଥାନରେ, ପ୍ରଦେଶର ଚାରିଆଡ଼େ ସଭା ସମିତି ହୋଇଛି। ପୁରୀ ସଭାରେ ପାଞ୍ଚ ହଜାର ଲୋକ ହୋଇଥିଲେ; ସେହିପରି ସତ୍ୟବାଦୀ ସଭାରେ ଚାରି ହଜାର, କଟକ ସଭାରେ ସାତ ହଜାର, ଏହିପରି ଭାବରେ ଲୋକ ଥିଲେ। ଏହିସବୁ ସଭା ସରକାରଙ୍କ ପାଖକୁ ତାର ପଠାଇଥିଲେ। 1918 ସାଲ ମାର୍ଚ୍ଚ 18 ତାରିଖ ଦିନ ସତ୍ୟବାଦୀ ସଭାରେ ମୁଁ ଉପସ୍ଥିତ ଥିଲି। ଲୋକେ ମୋତେ ପଚାରିଲେ, ଗୋପବନ୍ଧୁ ବାବୁ, ତିନିମାସ ତଳେ ଏମାର ମଠ ଚଉତରାରେ ଯେଉଁ ବିରାଟ ସଭା ହୋଇଥିଲା, ସେ ସଭାରୁ ସରକାରଙ୍କ ପାଖକୁ ଟେଲିଗ୍ରାମ ଯାଇଥିଲା। କ'ଣ ହେଲା ? ମୁଁ କହିଲି, ସରକାର ଟେଲିଗ୍ରାମ ପାଇଛନ୍ତି କିନ୍ତୁ ଆମ ମନ୍ତ୍ରୀମାନଙ୍କ ପାଟି ଫିଟୁନି।

ଏଥିରୁ ଜଣା ପଡ଼ିବ, ଲୋକେ କିପରି ଦେଶ ମିଶ୍ରଣ ଆନ୍ଦୋଳନ ପଛରେ ଅଛନ୍ତି। ଏହା ଜନମତ। ସରକାରଙ୍କୁ ଏହି ମତ ଜଣାଇ ଦିଆ ଯାଇଛି। ଯଦି ସରକାର ଏହାକୁ ଅବିଶ୍ୱାସ କରିବେ, ଆମେ କ'ଣ କରି ପାରିବା ? ଯଦି ଏମିତି ଗୋଟିଏ ଗ୍ରାମୋଫୋନ ମିଳନ୍ତା, ଯେଉଁଥିରେ ଓଡ଼ିଆମାନେ ମିଶି ଏକାଠି ପାଟି କରନ୍ତେ, ଆମେ ସେ ରେକର୍ଡ଼କୁ ମନ୍ତ୍ରୀଙ୍କ କାନରେ ବଜାଇ ଦିଅନ୍ତେ। ଆଉ କ'ଣ କରାଯାଇ ପାରିବ ?"

**ସମ୍ମିଳନୀର ସଭାପତି ଗୋପବନ୍ଧୁ**

ଗୋପବନ୍ଧୁ 1919 ଇଦ୍‌ଗା ଅଧିବେଶନ ପାଇଁ ସଭାପତି ନିର୍ବାଚିତ ହୋଇଥିଲେ। ଏହି ଅଧିବେଶନ ଆରମ୍ଭରେ ସାମାନ୍ୟ ଗଣ୍ଡଗୋଳ ହୋଇଥିଲା। କଟକର ଛାତ୍ରମାନଙ୍କ ସହିତ ମଧୁସୂଦନଙ୍କର ମତଭେଦ ହେବାରୁ ସେମାନେ ସମ୍ମିଳନୀରେ ସ୍ୱେଚ୍ଛାସେବକ ହେବା ଲାଗି ମନା କରି ଦେଇଥିଲେ। ମଧୁସୂଦନ ଓ ବ୍ରଜସୁନ୍ଦର ସାକ୍ଷୀଗୋପାଳ ଯାଇ ଖାଠିଏ ଜଣ ଛାତ୍ର ସ୍ୱେଚ୍ଛାସେବକ ଆଣିଥିଲେ ଏବଂ ସେମାନେ କଟକ

ଷ୍ଟେସନରେ ପହଞ୍ଚିବା ମାତ୍ରକେ ମଧୁସୂଦନ ସେମାନଙ୍କୁ ସ୍ୱାଗତ କରି କହିଲେ, ''ଆଧୁନିକ ନାଳନ୍ଦାର ଛାତ୍ର ଓ ଶିକ୍ଷକମାନେ ଆସିଗଲେ। ବର୍ତ୍ତମାନ ସ୍ୱେଚ୍ଛାସେବକଙ୍କ ଅଭାବ ରହିବ ନାହିଁ। ମଣୀରାଜ (ଯଦୁମଣି) ଆଉ ତା ଦୁଷ୍ଟବୁଦ୍ଧି ଖେଳାଇ ମଙ୍ଗ ମୋଡ଼ି ପାରିବ ନାହିଁ ।''

**ଓଡ଼ିଆ କିଏ ?**

ସଭାପତି ଅଭିଭାଷଣରେ ଗୋପବନ୍ଧୁ କହିଥିଲେ, ''ଉତ୍କଳ ଓ ଓଡ଼ିଆ ଭିତରେ କୌଣସି ପ୍ରଭେଦ ନାହିଁ। ରହିବା ମଧ ବାଞ୍ଛନୀୟ ନୁହେଁ। ବଙ୍ଗଳା ବା ପଞ୍ଜାବ, ମାରୱାର ବା ମାନ୍ଦ୍ରାଜ ଯେ ଯେଉଁଠୁ ଆସିଥାନ୍ତି, ହିନ୍ଦୁ ବା ମୁସଲମାନ, ଆର୍ଯ୍ୟ ବା ଦ୍ରାବିଡ଼ ଯେ ଯେଉଁ ଜାତିର ହୋଇଥାନ୍ତୁ ଓ ଯେ ଉତ୍କଳ ବା ଓଡ଼ିଶା ସହିତ ନିଜକୁ ମିଶାଇ ଦେଇଛି, ସେ ଓଡ଼ିଶାର। ସେ ମଧ ଓଡ଼ିଆ। ଓଡ଼ିଆ ଜାତୀୟତାର ବିକାଶ କରିବା ସମ୍ମିଳନୀର ଲକ୍ଷ୍ୟ। ପ୍ରାକୃତିକ ଓଡ଼ିଶାରେ ବାସ କରୁଥିବା ଯେ କୌଣସି ଲୋକ ଓଡ଼ିଶାକୁ ନିଜ ପ୍ରଦେଶ ବୋଲି ଭାବୁଥିଲେ ଓଡ଼ିଆ ଜାତି ତାଙ୍କୁ ବି ଗ୍ରହଣ କରିବ। ଓଡ଼ିଆ ଜାତୀୟତାର ଲକ୍ଷ୍ୟ ନୁହେଁ ଆଞ୍ଚଳିକତା, ଏହାର ଲକ୍ଷ୍ୟ ହେଲା ବିଶ୍ୱ ପ୍ରେମ। ବିଶ୍ୱ ପ୍ରେମ ଓ ଜୀବନର ପରିପୂର୍ଣ୍ଣତାରେ ଓଡ଼ିଆ ଜାତୀୟତା ନିହିତ। ଏହା ସ୍ୱାର୍ଥପର ବା ନିର୍ଜୀବ ନୁହେଁ ଓ ଏହା ନିଷ୍କ୍ରିୟ ପ୍ରେମରେ ଆଗ୍ରହୀ ନୁହେଁ। ରାଜ୍ୟ ଜୟ ଲିପ୍ସା ବା ରକ୍ତ ପିପାସା ଉପରେ ଏହା ପ୍ରତିଷ୍ଠିତ ନୁହେଁ। ସମାନତା, ଭ୍ରାତୃତ୍ୱ ଓ ସ୍ୱାଧୀନତା ହେଉଛି, ଏହାର ମୂଳମନ୍ତ୍ର। ଓଡ଼ିଶାର ନଦୀ ହେଉଛି, ମହାନଦୀ; ଓଡ଼ିଶାର ସମୁଦ୍ର ହେଲା ମହୋଦଧି। ଓଡ଼ିଶାର ପର୍ବତର ନାମ ମହେନ୍ଦ୍ରଗିରି, ଓଡ଼ିଶାର ବୃକ୍ଷ ହେଲା କଳ୍ପବଟ; ଓଡ଼ିଶାର ଦେବତା ହେଉଛନ୍ତି, ଜଗନ୍ନାଥ ଏବଂ ଓଡ଼ିଶାର ଶ୍ମଶାନର ନାମ ସ୍ୱର୍ଗଦ୍ୱାର। ଓଡ଼ିଆ ଚତୁର୍ଦ୍ଦିଗରେ କେବଳ ବିଶାଳତା ଦେଖେ। ଏହି ସମ୍ମିଳନୀ ହେଉଛି ଭାରତୀୟ ଜାତୀୟ ଆନ୍ଦୋଳନର ଅଂଶ ବିଶେଷ। ଆମ ବ୍ୟକ୍ତିତ୍ୱକୁ ସୁରକ୍ଷିତ କରିବାକୁ ହେଲେ ଆମ ଜାତୀୟତାର ମୂଳଦୁଆକୁ ସୁଦୃଢ଼ କରିବାକୁ ହେବ। ଆମ ଲୋକମାନଙ୍କୁ ଐକ୍ୟବଦ୍ଧ ରଖିବାକୁ ପଡ଼ିବ। କୌଣସି ଜାତୀୟ ଆନ୍ଦୋଳନରେ ବଡ଼, ସାନ ଭେଦ ରହିବା ଉଚିତ ନୁହେଁ। ଜାତୀୟ ଉଦ୍ୟମରେ ମହାରାଜା ଓ ମେହେନ୍ତରଙ୍କ ମଧରେ ପାର୍ଥକ୍ୟ ନାହିଁ।

ପରିବର୍ତ୍ତନ ଆଣିବା ଲାଗି ଆମକୁ ଜାତୀୟତାର ମୂଳଦୁଆ କୃଷି, ଶିଳ୍ପ, ବାଣିଜ୍ୟ, ସାହିତ୍ୟ ଓ ଶିକ୍ଷାର ବିକାଶ ସାଧନ କରିବା ଉଚିତ। ଜନସାଧାରଣଙ୍କ ହୃଦୟ ଗଠନ ଲାଗି ଶିକ୍ଷା ହେଉଛି ଉପାୟ। ଶିକ୍ଷା କହିଲେ, ମୁଁ ବିଦ୍ୟାଳୟରେ ଅଧାପନା କଥା ବୁଝେ ନାହିଁ; ଶିକ୍ଷା କହିଲେ, ମୁଁ ବୁଝୁଛି ପ୍ରଦେଶରେ ଥିବା ପ୍ରାଚୀନ ଅନୁଷ୍ଠାନ ବା ଧର୍ମପୀଠରେ ଯାହା ଶିକ୍ଷା ଦିଆ ଯାଉଥିଲା। ଭାରତବାସୀ ନିଜ ଶିକ୍ଷା, ଶିଳ୍ପ ଓ ବାଣିଜ୍ୟର ଉନ୍ନତି କଲେ, ସ୍ୱାୟତ୍ତ ଶାସନ ପାଇଁ ନିଜକୁ ଯୋଗ୍ୟ କରି ପାରିବେ। ଏତେ କାଳ ଏହି ଦେଶର ଲୋକେ ଶାସନରୁ ଅଲଗା ଥିଲେ, ଆସନ୍ନ ଶାସନ ସଂସ୍କାର ସେମାନଙ୍କ ପାଇଁ ଶିକ୍ଷାପ୍ରଦ ହେବ, କିନ୍ତୁ ଲୋକେ ଶିକ୍ଷା ପାଇଲେ ହିଁ

ଶାସନ ସଂସ୍କାର ସଫଳ ହେବ। ପ୍ରଦେଶର ବିଭିନ୍ନ ସ୍ଥାନରେ ଶିକ୍ଷା ପ୍ରସାର ଲାଗି କାଁ ଭାଁ ଉଦ୍ୟମ ଚାଲିଛି। ସୁଫଳ ପାଇବା ଲାଗି ଏହି ଉଦ୍ୟମକୁ ଗୋଟିଏ ସୁଦୃଢ଼, ସ୍ଥାୟୀ ଓ ସୁସଂଗଠିତ ସଂଘ ଅଧୀନକୁ ଆଣିବା ଆବଶ୍ୟକ। ଏଥିପାଇଁ ନିଷ୍ଠା ଓ ମାନସିକ ଦୃଢ଼ତା ଦରକାର। ଏଥିପାଇଁ ଶିକ୍ଷିତ କର୍ମୀ ଓ ଆବଶ୍ୟକ ପାଣ୍ଠି ଅଭାବ ହେବ ନାହିଁ। ଗ୍ରାମ ଉନ୍ନୟନ ପାଇଁ ଗାଁର ଭାଗବତ ଟୁଙ୍ଗୀର ସଂସ୍କାର ଓ ପୁନର୍ଗଠନ ଆବଶ୍ୟକ। ଏହି ଭାଗବତ ଟୁଙ୍ଗୀଗୁଡ଼ିକ ଓଡ଼ିଶାର ଗ୍ରାମ୍ୟ ଜୀବନର ବିଶେଷତ୍ୱ। ଧର୍ମ ଓ ନ୍ୟାୟ ସଂବନ୍ଧରେ ଆଲୋଚନା କରିବା ଲାଗି ଏହି ସମ୍ମିଳନୀ ଗୋଟିଏ ଉପଯୁକ୍ତ କ୍ଷେତ୍ର। ପ୍ରତ୍ୟେକ ଭାଗବତ ଟୁଙ୍ଗୀ ପାଇଁ ଗୋଟିଏ ଲେଖାଁଏ ସାପ୍ତାହିକ ସଂବାଦପତ୍ର ନେବା ଆବଶ୍ୟକ। କର୍ମୀମାନେ ସଂବାଦପତ୍ରର ଉପକାରିତା ବିଷୟରେ ପ୍ରତ୍ୟେକ ପରିବାରକୁ ବୁଝାଇ ଦେବା ଉଚିତ। ସବୁ ଜିଲ୍ଲାରେ ଓ ସବୁ ଗାଁରେ ଏହି ସମ୍ମିଳନୀର ଶାଖା ସ୍ଥାପିତ ହେବା ଦରକାର। କାରିଗରମାନଙ୍କ ଜାତିଆଣ ସଭାକୁ ଏହା ସହିତ ମିଶାଇ ଦେବାକୁ ହେବ। ଆମେ ସମବାୟ ସମିତିଗୁଡ଼ିକୁ ସମ୍ମିଳନୀର ଶାଖା ରୂପେ ସ୍ଥାପନ କରିବା ଏବଂ ନୂଆ ଓ ପୁରୁଣା ଅନୁଷ୍ଠାନ ଗୁଡ଼ିକ ଶିକ୍ଷା ପ୍ରସାରର କେନ୍ଦ୍ର ରୂପେ ବ୍ୟବହାର କରିବା। ନାରୀ ଶିକ୍ଷା ପ୍ରତି ମଧ ଦୃଷ୍ଟି ଦେବାକୁ ପଡ଼ିବ। ନାରୀମାନେ ହେଉଛନ୍ତି ପରିବାରର ସଂପଦ। ସେମାନେ ଗୃହଲକ୍ଷ୍ମୀ। ସେମାନଙ୍କୁ ସୀତା ଓ ସାବିତ୍ରୀଙ୍କ ଆଦର୍ଶରେ ଗଢ଼ିବାକୁ ହେବ। ମାତୃଭାଷାରେ ଶିକ୍ଷା ଦିଆଯିବା ଉଚିତ। ଅତି ଦୁର୍ଭାଗ୍ୟର କଥା ଯେ ଗଞ୍ଜାମ ଓ ମେଦିନୀପୁର ଜିଲ୍ଲାରେ ଆଞ୍ଚଳିକ ଭାଷା ପ୍ରବର୍ତ୍ତନ ବିଷୟରେ ବହୁତ ବାଧା ଅଛି। ମାନ୍ଦ୍ରାଜର ବିଶାଖାପାଟଣା ଜିଲ୍ଲାର ଲୋକଙ୍କୁ ତେଲୁଗୁ ଶିଖିବା ଲାଗି ବାଧ କରାଯାଉଛି। ସିଂହଭୂମି, ପଦ୍ମପୁର, ଫୁଲଝର ଓ ଖଡ଼ିଆଳ ଲୋକେ ବାଧହୋଇ ହିନ୍ଦି ଶିଖୁଛନ୍ତି। ସେଠାରେ କୋର୍ଟ କଚେରୀରେ ଓଡ଼ିଆ ଭାଷାର ଚିହ୍ନ ବର୍ଣ୍ଣ ନାହିଁ। ପରିସ୍ଥିତିକୁ ନ ବଦଳାଇଲେ ଓଡ଼ିଆମାନେ ଜାତୀୟ ଶିକ୍ଷା ପାଇ ପାରିବେ ନାହିଁ ଓ ସେମାନଙ୍କ ମସ୍ତିଷ୍କର ବିକାଶ ସାଧିତ ହୋଇ ପାରିବ ନାହିଁ। ସିଂହଭୂମି ଜିଲ୍ଲାରେ ଓଡ଼ିଆ ଶିକ୍ଷା ପ୍ରସାର ଏବଂ ଯେଉଁ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକଙ୍କୁ ହିନ୍ଦି, ବଙ୍ଗଳା ବା ତେଲଗୁ ଶିଖିବାକୁ ବାଧ କରା ଯାଉଛି, ସେଠାରେ ଓଡ଼ିଆ ଭାଷାର ବ୍ୟବହାର ଓ ଶିକ୍ଷା ପାଇଁ ଗୋଟିଏ ଓଡ଼ିଆ ଶିକ୍ଷା ପାଣ୍ଠି ଖୋଲା ଯାଇଛି। ମନେରଖ, ଓଡ଼ିଆ ଭାଷା ଧ୍ୱଂସ ପାଇଲେ ଓଡ଼ିଆ ଜାତୀୟତା ଧ୍ୱଂସ ପାଇଯିବ। ଆମପାଇଁ ଏହି ଭାଷା ସମସ୍ୟା ଗୋଟିଏ ଜୀବନ ମରଣ ସମସ୍ୟା ହୋଇ ଉଠିଛି। ସମଗ୍ର ଭାରତ ପାଇଁ ଗୋଟିଏ ସାଧାରଣ ଭାଷା ହୋଇପାରିଲେ ଭଲ; ଏହା ହେଲେ ମୁଁ ସେଥିପାଇଁ ଓଡ଼ିଆ ଭାଷାକୁ ତ୍ୟାଗ କରିବାକୁ ପ୍ରସ୍ତୁତ ଅଛି କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ଏହା ନ ହୋଇଛି, ଓଡ଼ିଆ ତା ନିଜ ସତ୍ତା ହରାଇ ପାରିବ ନାହିଁ। କେବଳ ଭାଷା କ୍ଷେତ୍ରରେ ନୁହେଁ, ଆହୁରି ବହୁ ବିଷୟରେ ଇଂରେଜ ସରକାର ଲୋକଙ୍କ ପ୍ରତି ଉଦାସୀନତା ଓ ନିସ୍ପୃହତା ଦେଖାଇ ଆସିଛନ୍ତି। ଓଡ଼ିଆମାନେ ରାଜଭକ୍ତ ଓ ସେମାନେ ଶାସକଙ୍କ

ହୁକୁମକୁ ପ୍ରତିବାଦ ନ କରି ପାଳନ କରି ଆସିଛନ୍ତି। ସେମାନେ ଶାସକଙ୍କ ଅନ୍ୟାୟ ଆଚରଣ କଥା ବୁଝିଲେଣି। ନିଜ ଭାଷାର ବିକାଶ ଓ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ସେମାନେ ବାରଂବାର ନିବେଦନ କରି ଆସୁଥିଲେ ହେଁ ସରକାର ସେମାନଙ୍କ ପ୍ରତି ଦୃଷ୍ଟି ଦେଉ ନାହାନ୍ତି। ସେମାନେ ଜାଣିବା ଉଚିତ, ଏହା ଗୋଟିଏ ନ୍ୟାୟୋଚିତ ଦାବୀ ଏବଂ ସେମାନଙ୍କ ଅସ୍ତିତ୍ୱ ସୁରକ୍ଷିତ ହେବା ଆବଶ୍ୟକ। ମଣ୍ଟ-ଫୋର୍ଡ଼ ଶାସନ ସଂସ୍କାର ବେଳେ ଆମ ଦାବୀ ଗୃହୀତ ହେବ ବୋଲି ଆମେ ଆଶା କରିଥିଲୁ, କିନ୍ତୁ ଦୁଃଖର କଥା, ସେମାନେ ଆମ ପାଇଁ ଗୋଟିଏ ଉପ-ପ୍ରଦେଶ ସୁପାରିଶ କରିଛନ୍ତି। ସେମାନେ ଏହି ବିଷୟରେ କୌଣସି ବିଶେଷ ବିବରଣୀ ଦେଇ ନାହାନ୍ତି। ମୋର ସତ୍ୟ ଓ ନ୍ୟାୟ ଉପରେ ଆସ୍ଥା ଅଛି ଏବଂ ମୁଁ ଦେଶ ମିଶ୍ରଣ ବିଷୟରେ ବିଶ୍ୱାସ ରଖିଛି। ଶୀଘ୍ର ହେଉ ବା ଡେରିରେ ହେଉ, ଆମ ଲକ୍ଷ୍ୟ ନିଶ୍ଚୟ ଲାଭ ହେବ।

କର ବା ମର ଆମ ନୀତି ହେବା ଉଚିତ। ଏହି ଦୁଃସାଧ ଲକ୍ଷ୍ୟ ଲାଭ ପାଇଁ ଆମକୁ ପ୍ରାଣପାତ କରିବାକୁ ପଡ଼ିପାରେ। ବ୍ୟକ୍ତିର ତ୍ୟାଗ ହିଁ ଜାତିକୁ ସୁଦୃଢ଼ କରେ। ଏହା ହିଁ ଲକ୍ଷ୍ୟ ପୂରଣ ପାଇଁ ଏକମାତ୍ର ପନ୍ଥା। ଭୟ ଛାଡ଼, ନିରାଶ ହୁଅ ନାହିଁ। ଉତ୍କଳ ମାତାର ଏହା ହିଁ ଆଦେଶ। ବିଶ୍ୱାସ କର, ଓଡ଼ିଆ ଯେ ଏତେ କାଳ ଇତିହାସର ସଂକଟ ମଧ ଦେଇ ତିଷ୍ଠି ପାରିଛି, ଏହା ନିରର୍ଥକ ନୁହେଁ। ଅଖିଳ ଭାରତ ପରିସରରେ ଆମକୁ ବହୁତ କିଛି କରିବାକୁ ପଡ଼ିବ। ଜ୍ଞାନ ଅନୁସରଣ କରି ଭାରତର ବହୁ ମୁନିଋଷି ଏହି ପବିତ୍ର ଉତ୍କଳ ଭୂମିକୁ ଆସିଛନ୍ତି। ସେମାନଙ୍କ ଚିନ୍ତାଧାରା ଏ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ସଂପୂର୍ଣ୍ଣ ରୂପେ ପହଞ୍ଚି ପାରି ନାହିଁ। ହେ ଉତ୍କଳପୁତ୍ର! ପରିପ୍ରଚାରର ବେଳ ଆସିଛି। ସେବାର ସୁଯୋଗ ଆସି ଯାଇଛି। ପ୍ରତି ପଡ଼ାକୁ ଯାଅ, ପ୍ରଦେଶର ଗଳିକନ୍ଦିରେ ବୁଲ ଓ ସମସ୍ତଙ୍କ କାନରେ ଏହି ଶୁଭ ସଂବାଦ ପହଞ୍ଚାଇ ଦିଅ। ଅତୀତରେ ସବୁ ଦେଶରୁ ଋଷିମାନେ ଏହି ପବିତ୍ର ଭୂମିକୁ ଆସିଛନ୍ତି। ଏବେ ପ୍ରତ୍ୟେକ ଓଡ଼ିଆ ଋଷି ହେବା ବେଳ ଆସିଛି। ତପସ୍ୟା ଓ ନିଷ୍ଠା ବିନା କୌଣସି ମହତ୍ କାମ ସାଧିତ ହୋଇ ପାରିବ ନାହିଁ। ଏହି ନିଷ୍ଠା ହିଁ ମୁକ୍ତିର ପଥ।''

## ସମ୍ମିଳନୀ ଓ କଂଗ୍ରେସର ମିଶ୍ରଣ

ଗୋପବନ୍ଧୁଙ୍କର ଏହି ଉଦ୍‌ବୋଧନ ସତ୍ତ୍ୱେ ନିଖିଳ ଭାରତ ଜାତୀୟ କଂଗ୍ରେସ ସହିତ ମିଶି ଯିବା ଲାଗି ଉତ୍କଳ ସମ୍ମିଳନୀ ରାଜି ହେଲା ନାହିଁ। ସମ୍ବଲପୁରର ଚନ୍ଦ୍ର- ଶେଖର ବେହେରାଙ୍କ ସଭାପତିତ୍ୱରେ ସେହି 1919ରେ ଅନୁଷ୍ଠିତ ସମ୍ମିଳନୀରେ ଅନ୍ୟ ଏକ ଅଧିବେଶନରେ ମଧ ସମ୍ମିଳନୀକୁ ଗୋଟିଏ ଜାତୀୟ ମଣ୍ଡପରେ ପରିଣତ କରି ହେଲା ନାହିଁ। ତଥାପି ଗୋପବନ୍ଧୁ ନିରାଶ ହେବାର ଲୋକ ନ ଥିଲେ।

1920 ସେପ୍ଟେମ୍ବରରେ କଲିକତାରେ ଅନୁଷ୍ଠିତ ଏକ ସ୍ୱତନ୍ତ୍ର ଅଧିବେଶନରେ ନିଖିଳ ଭାରତ ଜାତୀୟ କଂଗ୍ରେସ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଯୋଜନା ଗ୍ରହଣ କରିନେଲା।

ଗୋପବନ୍ଧୁ ଓଡ଼ିଶାରୁ ପ୍ରତିନିଧି ରୂପେ ଏହି ଅଧିବେଶନରେ ଯୋଗ ଦେଇଥିଲେ। 1920 ସେପ୍ଟେମ୍ବର 4 ତାରିଖ ଦିନ ଅଧିବେଶନ ଅନୁଷ୍ଠିତ ହୋଇଥିଲା ସିନା, କିନ୍ତୁ କଲିକତାକୁ ଯିବା ପୂର୍ବରୁ ଗୋପବନ୍ଧୁ ଅଗଷ୍ଟ 30 ତାରିଖ ଦିନ ପୁରୀ ଜିଲ୍ଲା କଂଗ୍ରେସ କମିଟି ଗଠନ କରିଥିଲେ ଓ ନିଜେ ଏହାର ସଭାପତି ହେଲେ। ସେହିବର୍ଷ ଡିସେମ୍ବର ମାସରେ ଗୋପବନ୍ଧୁ ଜଣେ ପ୍ରତିନିଧି ହିସାବରେ ନାଗପୁର ଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ। ବିରାଟ ଆକାରରେ କଂଗ୍ରେସର ଅଧିବେଶନ ହେବା ଏହା ହିଁ ସର୍ବ ପ୍ରଥମ। ମହାତ୍ମା ଗାନ୍ଧିଙ୍କ ଆବିର୍ଭାବ ପୂର୍ବରୁ କଂଗ୍ରେସ ମଧ୍ୟବିତ୍ତ ବୁଦ୍ଧିଜୀବୀ ମାନଙ୍କର ଅନୁଷ୍ଠାନ ଥିଲା; କିନ୍ତୁ ଗାନ୍ଧିଜୀଙ୍କ ଅସହଯୋଗ ଯୋଜନା ଏହାର ରୂପାନ୍ତର କରି ଦେଇଥିଲା ଓ ସେହି ଦିନଠାରୁ କଂଗ୍ରେସ ଗୋଟିଏ ଗଣ ଅନୁଷ୍ଠାନରେ ପରିଣତ ହେଲା। କଂଗ୍ରେସର ପୁନର୍ଗଠନ ବେଳେ ଭାଷା ଭିତ୍ତିକ ପ୍ରଦେଶ ଗଠନ ନୀତିକୁ ଗ୍ରହଣ କରିବା ନିମିତ୍ତ ଗୋପବନ୍ଧୁ' ମହାତ୍ମା ଗାନ୍ଧିଙ୍କୁ ପ୍ରବର୍ତ୍ତାଇ ପାରିଥିଲେ ଏବଂ ଏହି ସମୟରେ ନାଗପୁର ଠାରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା। ବିଭିନ୍ନ ପ୍ରଦେଶରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଗୁଡ଼ିକୁ ମିଶାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବିଷୟରେ ଉତ୍କଳ ସମ୍ମିଳନୀ ଗ୍ରହଣ କରିବା ପରେ ଭାରତୀୟ ଜାତୀୟ ଆନ୍ଦୋଳନରୁ ଉତ୍କଳ ସମ୍ମିଳନୀ ଅଲଗା ରହିବା ପାଇଁ ଆଉ କୌଣସି ଯଥାର୍ଥତା ରହିଲା ନାହିଁ। ସେ ନାଗପୁରରୁ ଫେରି ଆସି ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟି ଗଠନ କଲେ ଓ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟି ଏହା ସହିତ ସଂଶ୍ଳିଷ୍ଟ ହେଲା।

1920 ଡିସେମ୍ବର 30 ତାରିଖ ଦିନ ଚକ୍ରଧରପୁର ଠାରେ ଉତ୍କଳ ସମ୍ମିଳନୀର ଗୋଟିଏ ଅଧିବେଶନ ଅନୁଷ୍ଠିତ ହେଲା। ଭାରତୀୟ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନ ଶେଷ ହେବାର ଅବ୍ୟବହିତ ପରେ ଏହା ଅନୁଷ୍ଠିତ ହୋଇଥିଲା। ନିମ୍ନଲିଖିତ ପ୍ରସ୍ତାବଟି ଦ୍ୱିତୀୟ ପ୍ରସ୍ତାବ ରୂପେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦ୍ୱାରା ଆଗତ ଓ ଚନ୍ଦ୍ରଶେଖର ବେହେରାଙ୍କ ଦ୍ୱାରା ସମର୍ଥୀତ ହୋଇ ଗୃହୀତ ହୋଇଥିଲା।

''ଏହି ସଭା ପ୍ରସ୍ତାବ କରୁଛି ଯେ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସହିତ ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ୟ ମଧ୍ୟ ସମ୍ମିଳନୀର ଲକ୍ଷ୍ୟ ହେଉ।''

ସିଂହଭୂମିର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ଦ୍ୱାରା ଆଗତ ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦ୍ୱାରା ସମର୍ଥିତ ହୋଇ ନିମ୍ନ ଲିଖିତ ପ୍ରସ୍ତାବ ତୃତୀୟ ପ୍ରସ୍ତାବ ରୂପେ ଗୃହୀତ ହୋଇଥିଲା।

''ଏହି ସଭା ପ୍ରସ୍ତାବ କରୁଛି ଯେ ଭାଷା ଭିତ୍ତିକ ପ୍ରଦେଶ ଗଠନ ବିଷୟରେ ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ଗୃହୀତ ପ୍ରସ୍ତାବକୁ ସମ୍ମିଳନୀ ସର୍ବାନ୍ତଃକରଣରେ ସମର୍ଥନ କରୁ।''

ଉତ୍କଳ ସମ୍ମିଳନୀର ଘଟାନ୍ତର ବିଷୟରେ ଶେଷ ପଦକ୍ଷେପ ସ୍ୱରୂପ ସମ୍ମିଳନୀର ଏହି ଅଧିବେଶନ ଷଷ୍ଠ ପ୍ରସ୍ତାବରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ

ସଂବନ୍ଧରେ ସେ ପର୍ଯ୍ୟନ୍ତ ସମ୍ମିଳନୀ ଗ୍ରହଣ କରିଥିବା ସମସ୍ତ ପ୍ରସ୍ତାବକୁ ଦୃଢ଼ୀକରଣ କଲା । ଗୋପବନ୍ଧୁ କହୁଥିଲେ, ଓଡ଼ିଶା ଭାରତର ଅଂଶ ବିଶେଷ । ଓଡ଼ିଶାର ପ୍ରାଦେଶିକତା ଭାରତୀୟ ଜାତୀୟତାରୁ ପୃଥକ ହୋଇ ନ ପାରେ । ତେଣୁ ସେ ଉତ୍କଳ ସମ୍ମିଳନୀକୁ ଭାରତୀୟ ଜାତୀୟ କଂଗ୍ରେସର ଗୋଟିଏ ଅଂଶ କରିବା ଲାଗି ପ୍ରଗାଢ଼ ଉଦ୍ୟମ କରିଥିଲେ । ସେ ଚକ୍ରଧରପୁର ଅଧିବେଶନରେ ନିଜ ଲକ୍ଷ୍ୟ ଲାଭ କରି ନିଜେ ଜଣେ କଂଗ୍ରେସ ଲୋକ ହୋଇଗଲେ ।

# ଗୋପବନ୍ଧୁ ଓ ଗାନ୍ଧିଜୀ

ପ୍ରତି ଜିଲ୍ଲାରେ କଂଗ୍ରେସ କମିଟି ଗଠନ କରିବା କାର୍ଯ୍ୟରେ ଗୋପବନ୍ଧୁ ନିଜକୁ ସର୍ବାନ୍ତଃକରଣରେ ନିୟୋଜିତ କଲେ। ସେତେବେଳକୁ ସାପ୍ତାହିକ "ସମାଜ" ପ୍ରତିଷ୍ଠିତ ହୋଇ ଅସହଯୋଗର ବାର୍ତ୍ତା ପ୍ରଚାର କରୁଥିଲା। ତାଙ୍କ ବାଣୀ ଓଡ଼ିଶାର କୋଣେ କୋଣେ ପ୍ରଚାରିତ ହେଲା ଓ ଅସହଯୋଗ ସମ୍ବନ୍ଧରେ ସାଧାରଣ ଲୋକେ ଖୁବ୍ ଉତ୍ସାହିତ ହେଲେ। ଯୁବକମାନେ ଦଳ ବାନ୍ଧି କଂଗ୍ରେସ ବାର୍ତ୍ତା ପ୍ରଚାର କରିବାରେ ଲାଗିଗଲେ। ପ୍ରତି ଜିଲ୍ଲା, ଅନୁବିଭାଗ ଓ ଥାନା ମୁଖ୍ୟାଳୟରେ କଂଗ୍ରେସ କମିଟି ଗଢ଼ିଉଠିଲା ଏବଂ ଆବାଳବୃଦ୍ଧବନିତା ଜାତୀୟ ସ୍ୱାଧୀନତା ପାଇଁ ସ୍ୱକୀୟ ଅବଦାନ ବିଷୟରେ ପ୍ରତିଦ୍ୱନ୍ଦିତା ଆରମ୍ଭ କରିଦେଲେ। ଏହି ସମୟରେ ଭାରତରେ ଖୀଲାଫତ୍ ଆନ୍ଦୋଳନ ଚାଲିଥାଏ। ଜାଲିଓ୍ୱାନାଓ୍ୱାଲାବାଗର ଗଣହତ୍ୟା ସହିତ ପଞ୍ଜାବରେ ପାଶବିକ ଅତ୍ୟାଚାର ଭଳି ବିଷୟ ଓ ଏହି ନିଷ୍ଠୁର ନୀତି ବିରୁଦ୍ଧରେ ଲୋକେ କ୍ଷୁବ୍ଧ ହୋଇଥାନ୍ତି। ଗୋପବନ୍ଧୁ ସମଗ୍ର ପ୍ରଦେଶରୁ ସ୍ୱେଚ୍ଛାସେବକ ସଂଗ୍ରହ କଲେ ଏବଂ ଅସହଯୋଗର ଢେଉ ସାରା ଦେଶକୁ ପ୍ଲାବନ କଲା।

1920 ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଚକ୍ରଧରପୁର ଅଧିବେଶନ ଅସହଯୋଗକୁ ନିଜ ଯୋଜନାରେ ଅନ୍ତର୍ଭୁକ୍ତ କରି ସାରିଥିଲା। ଏତଦ୍ୱାରା ଆଞ୍ଚଳିକତା ଓ ଭାରତୀୟ ଜାତୀୟତାର ମହାମିଳନ ହୋଇଥିଲା ଏବଂ ପ୍ରତ୍ୟେକ ଓଡ଼ିଆ ନିଜକୁ ଜାତୀୟ ସ୍ୱାଧୀନତା ଆନ୍ଦୋଳନରେ ସାମିଲ କରି ପାରିଥିଲେ। ହରେକୃଷ୍ଣ ମହତାବ, ନବକୃଷ୍ଣ ଚଉଧୁରୀ ଓ ଯଦୁମଣି ମଙ୍ଗରାଜଙ୍କ ପରି ଶହ ଶହ ଯୁବକ ପାଠ ପଢ଼ା ଅଧା ରଖି ସ୍କୁଲ ଓ କଲେଜ ଛାଡ଼ିଦେଲେ। ଓକିଲମାନେ ଓକିଲାତି ବର୍ଜନ କଲେ ଏବଂ ବଡ଼ ବଡ଼ ସରକାରୀ କର୍ମଚାରୀ ମଧ୍ୟ ପ୍ରତିବାଦ କରି ଇସ୍ତଫା ଦେଲେ। ଗୋପବନ୍ଧୁ ଚୌଧୁରୀ ଡେପୁଟୀ କଲେକ୍ଟର ଚାକିରୀ ଛାଡ଼ି ଆନ୍ଦୋଳନରେ ଝାସ ଦେଲେ। ଯୁବକମାନଙ୍କୁ ଜାତୀୟତା ମନ୍ତ୍ରରେ ଦୀକ୍ଷିତ କରିବା ଉଦ୍ଦେଶ୍ୟରେ ସେ ଓଡ଼ିଶାର ସବୁ ଜିଲ୍ଲାରେ ଆଶ୍ରମମାନ ପ୍ରତିଷ୍ଠା କରିଥିଲେ। ସେତିକିବେଳେ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ଓ ଚଉଧୁରୀ ଭାଇ ଦୁହେଁ, ଗୋପବନ୍ଧୁ ଓ ନବକୃଷ୍ଣଙ୍କ ଉଦ୍ଦୀପକ ନେତୃତ୍ୱରେ ଜଗତସିଂହପୁର ଠାରେ ଅଳକାଶ୍ରମ ନାମକ ଗୋଟିଏ ସେବକାଶ୍ରମ ପ୍ରତିଷ୍ଠିତ ହୋଇଥିଲା। ଅସହଯୋଗୀମାନଙ୍କୁ, ନିଜ ଶିକ୍ଷାକୁ ସଂପୂର୍ଣ୍ଣ କରିବା ଲାଗି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ସେ ଉତ୍କଳ ସ୍ୱରାଜ ଶିକ୍ଷା ପରିଷଦ ଗଠନ କରିଥିଲେ।

ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠାର ପ୍ରାଥମିକ ପଦକ୍ଷେପ ସ୍ୱରୂପ ସେ ନିଜ ପ୍ରିୟ ଅନୁଷ୍ଠାନ ସତ୍ୟବାଦୀ ବନ ବିଦ୍ୟାଳୟକୁ ଗୋଟିଏ ଜାତୀୟ ବିଦ୍ୟାଳୟରେ ପରିଣତ କରିଥିଲେ।

ଅସହଯୋଗ ଆନ୍ଦୋଳନ ଓଡ଼ିଶା ସାରା ଖୁବ ଦ୍ରୁତବେଗରେ ବ୍ୟାପି ଯାଇଥିଲା ଓ ଶହ ଶହ ଯୁବକ କାରା ବରଣ କରିଥିଲେ। କେହି ଶିଖେଇ ଦେବାର ଆବଶ୍ୟକତା ନ ଥିଲା; ଗାନ୍ଧିଜୀଙ୍କ ପ୍ରେରଣା ଦାୟକ ଭାଷଣ ଓ ଗୋପବନ୍ଧୁଙ୍କ ନେତୃତ୍ୱର ଏହା ସ୍ୱାଭାବିକ ପରିଣତି ଥିଲା। ଗୋପବନ୍ଧୁଙ୍କ ଧାରଣା ହେଲା ଯେ ମହାତ୍ମା ଗାନ୍ଧି ଓଡ଼ିଶା ଗସ୍ତ କରି ପାରିଲେ ବ୍ରିଟିଶ ସରକାର ଏତେ କାଳ ଅବହେଳା କରି ଆସିଥିବା ଏହି ଉପକୂଳବର୍ତ୍ତୀ ପ୍ରଦେଶ ଜାତୀୟତାରେ ତାତି ଉଠିବ। ତେଣୁ ସେ ନାଗପୁର ଅଧିବେଶନକୁ ଯାଇ ଓଡ଼ିଶା ଆସିବା ଲାଗି ମହାତ୍ମା ଗାନ୍ଧିଙ୍କୁ ନିମନ୍ତ୍ରଣ କରିଥିଲେ। ମହାତ୍ମା ଗାନ୍ଧି ଏହି ଅନୁରୋଧ ରକ୍ଷା କରି 1921 ସାଲ ମାର୍ଚ୍ଚ 23 ତାରିଖ ଦିନ କଟକରେ ପହଞ୍ଚିଲେ।

ଗୋପବନ୍ଧୁଙ୍କର ଜାତୀୟ ଆନ୍ଦୋଳନ ପ୍ରତି ନିଷ୍ଠା ଓ ଆନ୍ତରିକତା ଦେଖି ମହାତ୍ମା ଗାନ୍ଧି ଏତେ ମୁଗ୍ଧ ହୋଇଥିଲେ ଯେ ଗୋପବନ୍ଧୁ ଜାତୀୟତାର ବାର୍ତ୍ତା ପ୍ରଚାର କରିବା ଲାଗି ତାଙ୍କ ସାହାଯ୍ୟ ମାଗିବା ମାତ୍ରକେ ସେ ମନା କରି ପାରି ନ ଥିଲେ। ଗୋପବନ୍ଧୁଙ୍କ କାର୍ଯ୍ୟକଳାପ ଯୋଗୁ ସରକାରୀ ମହଲରେ ଉଦ୍‌ବେଗ ସୃଷ୍ଟି ହୋଇ ସାରିଥିଲା ଏବଂ ତାଙ୍କ ପଛ ଆଡ଼େ ମହାତ୍ମା ଗାନ୍ଧିଙ୍କ ସମର୍ଥନ ଅଛି ବୋଲି ଜାଣିବା ପରେ ସେମାନେ କାତର ହୋଇ ପଡ଼ିଲେ। ମହାତ୍ମାଙ୍କୁ ଅଭିନନ୍ଦନ ଜଣାଇ ତାଙ୍କ ବାର୍ତ୍ତାକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ଲାଗି ଗୋପବନ୍ଧୁ ଖୋଲା ପଡ଼ିଆରେ ସଭା ସମିତି ଆୟୋଜନ କରିଥିଲେ। ସାଦା ପୋଲିସ ଓ ସି.ଆଇ.ଡ଼ି. ପୋଲିସ ତାଙ୍କ କାର୍ଯ୍ୟକଳାପ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ। 1921 ସାଲ ମାର୍ଚ୍ଚ 23 ତାରିଖ ଦିନ କାଠଯୋଡ଼ି ବାଲିରେ ହୋଇଥିବା ସଭାରେ ଗୋପବନ୍ଧୁ ନିମ୍ନ ଲିଖିତ ଭାଷଣରେ ମହାତ୍ମାଙ୍କୁ ସମ୍ବର୍ଦ୍ଧନା କରି କହିଥିଲେ -

"ଭାଇମାନେ, ଯେଉଁ ମହାତ୍ମା ଗାନ୍ଧିଙ୍କୁ ଆପଣମାନେ ଦେଖିବେ ବୋଲି ଏତେ ଦିନ ବ୍ୟାକୁଳ ହେଉଥିଲେ, ସେ ଆଜି ଆପଣମାନଙ୍କ ସମ୍ମୁଖରେ ବିଦ୍ୟମାନ। ସେ ଭାରତର ଘରେ ଘରେ, ଗ୍ରାମେ ଗ୍ରାମେ ଆବାଳବୃଦ୍ଧବନିତାଙ୍କ ନିକଟରେ ପରିଚିତ। ଅତଏବ ତାଙ୍କର ପରିଚୟ ଦେଇ ସଭାର ବିଧି ରକ୍ଷା କରିବା ମୋ ପକ୍ଷରେ ବିଡ଼ମ୍ବନା ମାତ୍ର। ଉତ୍କଳରେ ପ୍ରତ୍ୟେକ ସ୍ତ୍ରୀ ପୁରୁଷ ଏ ମହାପୁରୁଷଙ୍କୁ ଜାଣନ୍ତି। ରାଜନୀତି କ୍ଷେତ୍ରରେ ଉତ୍କଳ ଭାରତରେ ଆଶାନୁରୂପ ଅଗ୍ରସର ହୋଇନାହିଁ। କିନ୍ତୁ ଧର୍ମ ବିଷୟରେ ଏହା ଅଗ୍ରସ୍ଥାନ ଚିରକାଳରୁ ପାଇ ଆସୁଛି। ଏ ପର୍ଯ୍ୟନ୍ତ ଯେ ସମସ୍ତ ମହାପୁରୁଷ ଭାରତରେ ଜନ୍ମ ଗ୍ରହଣ କରି ନିଜର କୀର୍ତ୍ତି ଏ ପୁଣ୍ୟଭୂମିରେ ଛାଡ଼ି ଯାଇଛନ୍ତି, ସେମାନେ ସମସ୍ତେ ଉତ୍କଳରେ ପଦାର୍ପଣ କରି ଯାଇ ଅଛନ୍ତି। ବୁଦ୍ଧଦେବଙ୍କଠାରୁ ଆରମ୍ଭ କରି କବୀର, ରାମାନୁଜ, ଶଙ୍କର, ନାନକ, ଚୈତନ୍ୟ ପ୍ରଭୃତି ଯେ ସମସ୍ତ କ୍ଷଣଜନ୍ମା ଏ ପବିତ୍ର ଭାରତରେ ଜନ୍ମଗ୍ରହଣ କରିଥିଲେ,

ସମସ୍ତେ ଉତ୍କଳରେ ନିଜର ଚିହ୍ନ ରଖି ଯାଇଛନ୍ତି। ଆହୁରି ମଧ୍ୟ ଆଜକୁ ପ୍ରାୟ 300 ବର୍ଷ ତଳେ ଠିକ୍ ଆଜିର ଦୋଳପୂର୍ଣ୍ଣିମା ତିଥିରେ ଚୈତନ୍ୟ ମହାପ୍ରଭୁ ଏହି ନଦୀର ବାଲୁକାରେ ପ୍ରେମ ଧର୍ମ ପ୍ରଚାର କରିଥିଲେ। ଆଜି ଅନ୍ୟ ଜଣେ ମହା ପୁରୁଷ ପୁଣି 300 ବର୍ଷ ପରେ ଏହି ବାଲୁକାରେ ସେହି ତିଥିରେ ରାଜନୈତିକ ପ୍ରେମ ଧର୍ମ ପ୍ରଚାର କରିବାକୁ ଆସିଛନ୍ତି। ଆମ୍ଭର ଉତ୍କଳ ଯୁଗେ ଯୁଗେ ଧର୍ମ ନିମିତ୍ତ ପ୍ରତିଷ୍ଠା ପାଇଅଛି। ଆଜି ପୁଣି ଏହି ମହାତ୍ମାଙ୍କ ଯୋଗୁ ରାଜନୀତି ପୁଣି ଧର୍ମ ଉପରେ ପ୍ରତିଷ୍ଠିତ। ଏହି ଧର୍ମାତ୍ମା ଓ ପୁଣ୍ୟାତ୍ମାଙ୍କ ରାଜନୀତିରେ କୂଟ ରାଜନୀତିର ସତ୍ତା ନାହିଁ। ତାଙ୍କ ପ୍ରଚାରିତ ଓ ଭାରତବାସୀଙ୍କ ଦ୍ୱାରା ଗୃହୀତ ନୀତିକୁ ଆପଣମାନେ ମନସ୍ଥ ହୋଇ ଅନୁସରଣ କରିବାକୁ ଉପସ୍ଥିତ। ଉତ୍କଳ ଯୁଗେ ଯୁଗେ ଧର୍ମ ବିଷୟରେ ଉଦାରତା ଦେଖାଇଛି। ନାନା ଧର୍ମ, ବର୍ଣ୍ଣ, ସଂପ୍ରଦାୟର ଲୋକେ ଉତ୍କଳରେ ଏକୀଭୂତ। ପୁରୀ ଧାମରେ ଜାତି ଭେଦ ନାହିଁ। ଆଜି ମହାତ୍ମା ଗାନ୍ଧୀଙ୍କ ଶୁଭାଗମନ ଉତ୍କଳ ଇତିହାସରେ ଏକ ନୂତନ ଓ ଚିର ସ୍ମରଣୀୟ ଘଟଣା। ଆପଣମାନେ ଉତ୍କଳୀୟଙ୍କର ପୂର୍ବ ଗୌରବ ଓ ଧର୍ମ ଉଦାରତା ସ୍ମରଣ ରଖି ମହାତ୍ମାଙ୍କ କଥା ଗ୍ରହଣ କରନ୍ତୁ। ”

ଓଡ଼ିଶାରେ ବିଜୟ ଗର୍ବରେ ପ୍ରବେଶ କରିବା ପରେ ମହାତ୍ମାଜୀ ଗୋପବନ୍ଧୁଙ୍କୁ ସାଙ୍ଗରେ ନେଇ ପୁରୀ ଗଲେ। ବାଟରେ ସେ ସାକ୍ଷୀଗୋପାଳ ବନ ବିଦ୍ୟାଳୟ ପରିଦର୍ଶନ କରି ସେଠାରେ ଛାତ୍ର, ଶିକ୍ଷକ ଓ ଜନ ସାଧାରଣ ଯୋଗ ଦେଇଥିବା ଏକ ବିରାଟ ସାଧାରଣ ସଭାରେ ଭାଷଣ ଦେଇଥିଲେ। ସେ ସତ୍ୟବାଦୀରେ ଉକ୍ତ ଅଭିନବ ଅନୁଷ୍ଠାନରେ ଗୋଟିଏ ଦିନ କଟାଇ ଥିଲେ ଏବଂ ଗୋପବନ୍ଧୁଙ୍କ ନେତୃତ୍ୱରେ ଏଠାରେ ପ୍ରଚଳିତ ଶିକ୍ଷାଦାନ ପଦ୍ଧତି ଓ ଶିକ୍ଷାର ମାନ ଦେଖି ମୁଗ୍ଧ ହୋଇଥିଲେ। ମହାତ୍ମା ନିଜ ନେତୃତ୍ୱରେ ପରବର୍ତ୍ତୀ କାଳରେ ଚଳାଇ ଥିବା ମୌଳିକ ଶିକ୍ଷା ପ୍ରଣାଳୀ ବିଷୟରେ ଆଲୋଚନା କରିଥିଲେ, କାରଣ ଏହା ସତ୍ୟବାଦୀରେ ଚଳୁଥିବାର ସେ ଦେଖିଲେ। ତାପର ଦିନ ସେ ପୁରୀରେ ପହଞ୍ଚିଲେ। ଏହି ସଭାରେ ଗୋପବନ୍ଧୁ ଗୋଟିଏ ତୀକ୍ଷ୍ଣ ବିଦ୍ରୂପାତ୍ମକ ଭାଷଣ ଦେଇଥିଲେ। ଉପସ୍ଥିତ ଜନତା ଜୋରରେ ତାଳି ଦେବାରୁ ଗୋପବନ୍ଧୁ କହିଥିଲେ-

“ଭାଇମାନେ, କରତାଳି ବନ୍ଦ କର। ବିହାର ଓଡ଼ିଶା ସରକାର ଶାନ୍ତି ଭଙ୍ଗର ଆଶଙ୍କା କରିଛନ୍ତି। ଏପରିକି ଏ କର ତାଳିରେ ବି ତାଙ୍କର ତଥା କଥିତ ଶାନ୍ତି ଭାଙ୍ଗି ଯାଇପାରେ। ଭାରତର ପଞ୍ଚତିରିଶ କୋଟି ଲୋକ ଯଦି କେବଳ ତାଳି ମାରି ଦିଅନ୍ତି, ତେବେ ଏ ଦେଶରେ ଥିବା ଲକ୍ଷେ ଇଂରେଜ ଉଡ଼ିଯାଇ ଦରିଆ ସେ ପାରିରେ ପଡ଼ିବେ। ଶୁଣା ଅଛି ଯେ କଟକରେ କୌଣସି ଜଣେ କଲେକ୍ଟର ଓ ଖୋର୍ଦ୍ଧାର ଜଣେ ଏସ. ଡ଼ି. ଓ ତାଙ୍କ ନିଦରେ ବ୍ୟାଘାତ ଆଣୁଥିବା ରାସ୍ତାର ଭୁକିଲା କୁକୁର ଓ ଶିଆଳ ବିରୁଦ୍ଧରେ ମଧ୍ୟ ମକଦ୍ଦମା ଆରୋପ କରୁଥିଲେ। ଏପରିକି ସଂକୀର୍ତ୍ତନକୁ ମଧ୍ୟ ବେଆଇନ କରୁଥିଲେ। ତେଣୁ ଭାଇମାନେ, ତୁମେ ତାଳି ମାରିବା ବନ୍ଦ କର। ତା ହେଲେ ଅହିଂସା ଓ ଶାନ୍ତିପୂର୍ଣ୍ଣ ଭାବରେ ସଭା କାର୍ଯ୍ୟ ଚଳେଇ ପାରିବା।

"ମୁଁ କେଉଁ ଭାଷାରେ ତୁମ ପାଖରେ ମହାତ୍ମାଙ୍କ ପରିଚୟ ଦେବି ଜାଣି ପାରୁ ନାହିଁ। ଏହି ମହାତ୍ମାଙ୍କ ଶରୀର କ୍ଷୀଣ ଓ ଗଠନଟି ଛୋଟ, କିନ୍ତୁ ସେଇ ଛୋଟ ଶରୀର ଓ ବିରାଟ ବ୍ୟକ୍ତିତ୍ୱ ହଜାର ହଜାର ଲୋକଙ୍କୁ ମନ୍ତ୍ରମୁଗ୍ଧ କରି ପାରୁଛି। ଏହି ବ୍ୟକ୍ତିତ୍ୱ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣ ବୈଷମ୍ୟ ଦୂର କରିବାରେ ଭାରତୀୟମାନଙ୍କୁ ବିଜୟ ଆଣି ଦେଇଛି; ପୁଣି ଚମ୍ପାରଣ ଜିଲ୍ଲାରେ ଦୁର୍ବୃତ୍ତ ବ୍ୟବସାୟୀଙ୍କ ଅତ୍ୟାଚାରରୁ ଦରିଦ୍ର ଚାଷୀମାନଙ୍କୁ ଉଦ୍ଧାର କରି ପାରିଛି। ଏହି ବ୍ୟକ୍ତିତ୍ୱ ପୁଣି କଇରା ଜିଲାର ଦୁର୍ଭିକ୍ଷ ପୀଡ଼ିତ ଲୋକମାନଙ୍କ କର ଭାର ଲଘୁ କରି ପାରିଛି। ପୁରୀ ଜିଲ୍ଲା କଥା କ'ଣ କହିବି ? ପୁରୀ ଜିଲ୍ଲାର ପ୍ରତି ଘରେ ଘରେ ସେ ପରିଚିତ। ସେ ମଣିଷ ନୁହଁନ୍ତି। ସେ ଭଗବାନ କିମ୍ବା ଭଗବାନଙ୍କ ଦୂତ। ତୁମେ ଜାଣିଛ, ଗତ ଦୁର୍ଭିକ୍ଷରେ ପୁରୀ ଜିଲ୍ଲାର କେତେ ଲୋକଙ୍କ ପ୍ରାଣହାନି ହେଲା। ଲୋକେ କେତେ କଷ୍ଟ ସହିଲେ ଓ ସରକାରଙ୍କୁ କେତେ ଆକୁଳ ନିବେଦନ କଲେ। ଶେଷରେ ଲାଟଙ୍କ ଆସନ କମ୍ପିଲା ଓ ସେ ନିଜେ ଆସି କହିଲେ, ' ଯାହା ହବାର କଥା ହୋଇନି।' ଦୁର୍ଭିକ୍ଷ ଆଇନ ଚଳାଇବା ଲାଗି ବେଳ ଆସିନି ବୋଲି ସେମାନେ କହିଲେ। ଲାଟ ସାହେବ ନିଜେ ଏହା କହିଲେ। ଯେତେବେଳେ ବିହାର ଓଡ଼ିଶା ବଡ଼ଲାଟ ପୁରୀ ଜିଲ୍ଲାର ବନ୍ୟା ପ୍ରପୀଡ଼ିତ ଜନତାର ଦୁଃଖ ବୁଝିବାରେ ଉଦାସୀନ, ଏହି ମହାତ୍ମା, ଆମ ହୃଦୟର ଅଧୀଶ୍ୱର ବଡ଼ଲାଟ ଆମ ଦୁଃଖରେ କାତର ହୋଇ ପଡ଼ିଲେ। ସେ ହିଁ ପ୍ରଥମେ ପୁରୀରେ ଦୁର୍ଭିକ୍ଷ ପଡ଼ିଛି ବୋଲି ଘୋଷଣା କଲେ। ତାଙ୍କରି ଅନୁରୋଧରେ ଭାରତର ସବୁ ଅଞ୍ଚଳରୁ ବହୁ ପରିମାଣରେ ସାହାଯ୍ୟ ପୁରୀର ବନ୍ୟା ପ୍ରପୀଡ଼ିତ ଦୁର୍ଭିକ୍ଷ ଗ୍ରସ୍ତ ଦରିଦ୍ର ପ୍ରଜାଙ୍କ ପାଖରେ ପହଞ୍ଚି ପାରିଥିଲା। ଭାଇମାନେ, ଆମ ପ୍ରାଣଦାତା ମହାପୁରୁଷ ମହାତ୍ମା ଗାନ୍ଧି ଆଜି ଆମ ସମ୍ମୁଖରେ ଉପସ୍ଥିତ। ମୁଁ ଦୁର୍ଭିକ୍ଷ ବେଳେ ତୁମମାନଙ୍କୁ ଦେଖିଛି। ଶହ ଶହ ଆମରି ଭାଇ ଖାଇବା ବିନା ମରି ଶୋଇଲେ। ଏହି ପାପ ପାଇଁ ସରକାର ହିଁ ଦାୟୀ। ପଞ୍ଜାବରେ ଯେଉଁ ଦୁର୍ଘଟଣା ଘଟିଥିଲା, ସେ ସବୁ ଆମ ଭାରତ ପାଇଁ ଘୋର ଦୁଃଖର କାହାଣୀ; ଇତିହାସର ବିକଟ ଉପହାସ ହୋଇ ରହିଯିବ। ଏସବୁ ପାଇଁ ମୁଁ ବ୍ୟବସ୍ଥା ସଭା ତ୍ୟାଗ କରିଛି। ଯାହା କିଛି ଅନ୍ୟାୟ ଘଟି ଯାଉଛି, ଜଣେ ସଭ୍ୟ ଭାବରେ ମୁଁ ସେହି ପାପରେ ବି ଭାଗୀଦାର। ମୁଁ ତେଣୁ ଏହି ପାପୀ ଶାସକମାନଙ୍କୁ ଛାଡ଼ି ଆସିଛି। ଏହା ହିଁ ମହାତ୍ମାଙ୍କ ଅସହଯୋଗର ବାର୍ତ୍ତା। ଏହା ଭାରତୀୟ ଜାତୀୟ କଂଗ୍ରେସର ଉଦ୍‌ଘୋଷଣା।

"ମୁଁ ମହାତ୍ମାଙ୍କୁ ଆପଣମାନଙ୍କ ତରଫରୁ ଜଣାଇବାକୁ ଚାହେଁ, ଓଡ଼ିଶା ଅସହଯୋଗର ଦୀକ୍ଷା ଗ୍ରହଣ କରି ଭାରତ ପ୍ରତି ତାର ଜାତୀୟତାର ପ୍ରମାଣ ଦେଇଛି। ଏହି ଜାତୀୟ ଯୁଦ୍ଧରେ ଓଡ଼ିଶାର ବହୁତ କିଛି କରିବାର ଅଛି। ଅତୀତରେ ଓଡ଼ିଶା ତାହାର ସହନଶୀଳତା ଓ ଜାତି ପାଇଁ ତ୍ୟାଗର ବହୁ ଦୃଷ୍ଟାନ୍ତ ଦେଖାଇ ଆସିଛି। ପୁରୀ ଏକ ପୁରାତନ ତୀର୍ଥକ୍ଷେତ୍ର। ଏଠାରେ ଗୌତମ ବୁଦ୍ଧଙ୍କ ଦନ୍ତ, କବୀରଙ୍କ କବର,

ରାମାନୁଜଙ୍କ ଆଶ୍ରମ ରହିଛି। ଗୁରୁ ନାନକଙ୍କ ଧର୍ମ ସଂଗୀତ ପୁରୀ ସମୁଦ୍ର ବେଳାରେ ପ୍ରତିଧ୍ୱନିତ ହୋଇଛି। ଏଇଠି ପରମ ବୈଷ୍ଣବ ଶ୍ରୀ ଚୈତନ୍ୟ ପ୍ରେମ ଧର୍ମ ପ୍ରଚାର କରିଛନ୍ତି। ସମଗ୍ର ପ୍ରଦେଶରେ ତାର ସ୍ମୃତି ବଞ୍ଚି ରହିଛି। କବୀର ହିନ୍ଦୁ ଓ ମୁସଲମାନଙ୍କ ମିଳନ କାମନା କରିଥିଲେ କିନ୍ତୁ ତାଙ୍କ ଆଶା ଅପୂର୍ଣ୍ଣ ରହିଗଲା। ଆଜି ମହାତ୍ମା ସେହି ଅପୂର୍ଣ୍ଣ କାର୍ଯ୍ୟର ଗୁରୁ ଭାର ବହନ କରି, କି ହିନ୍ଦୁ କି ମୁସଲମାନ ସମସ୍ତଙ୍କ ମନରେ ଜାତି ପ୍ରେମର ସ୍ରୋତ ବୁହାଇ ଦେଇଛନ୍ତି। ପ୍ରୟାଗରେ ଗଙ୍ଗା ଯମୁନାର ଧାର ମିଶିଥିବା ପରି ଆଜି ଭାରତୀୟ ମୁକ୍ତି ସଂଗ୍ରାମରେ ହିନ୍ଦୁ ଓ ମୁସଲମାନ ମିଶି ଯାଇଛନ୍ତି। ଯାହାଙ୍କ ପାଇଁ ଏହା ସମ୍ଭବ ହୋଇଛି, ସେହି ଦେବଦୂତ ମହାମାନବ ମହାତ୍ମା ଗାନ୍ଧି ଆଜି ପୁରୀର ଶରଧା ବାଲିରେ ଦଣ୍ଡାୟମାନ।''

ପୁରୀ ଲୋକଙ୍କୁ ନିଜ ବାର୍ତ୍ତା ଶୁଣାଇବା ପରେ ମହାତ୍ମା ଓ ଗୋପବନ୍ଧୁ ବ୍ରହ୍ମପୁର ଯାତ୍ରା କଲେ। ଗଞ୍ଜାମ ଜିଲାରେ ଓଡ଼ିଆ ଭାଷୀ ଲୋକ ବାସ କରୁଥିଲେ ହେଁ ବିହାର ଓ ଓଡ଼ିଶା ପ୍ରଦେଶର ନ ହୋଇ ମାନ୍ଦ୍ରାଜ ପ୍ରଦେଶରେ ଏହା ଗୋଟିଏ ଜିଲ୍ଲା ଥିଲା। ତଥାପି ଗୋପବନ୍ଧୁଙ୍କ ଆହ୍ୱାନରେ ଏହି ଓଡ଼ିଆମାନେ ସରକାରୀ ଦମନ ସତ୍ତ୍ୱେ ମହାତ୍ମାଙ୍କୁ ରାଜକୀୟ ସମ୍ବର୍ଦ୍ଧନା ଦେଇଥିଲେ। ଓଡ଼ିଶାର ଲୋକମାନଙ୍କ ଉପରେ ଗୋପବନ୍ଧୁଙ୍କ ବିରାଟ ପ୍ରଭାବ ଥିବା କଥା ମହାତ୍ମାଜୀ ଏହି ଗସ୍ତବେଳେ ଉପଲବ୍ଧି କରିଥିଲେ। ଗୋପବନ୍ଧୁଙ୍କ ଯୋଗୁ ମହାତ୍ମାଜୀ ଓଡ଼ିଆମାନଙ୍କ ଉତ୍କଟ ଦାରିଦ୍ର୍ୟ ସମ୍ବନ୍ଧରେ ଅବଗତ ହୋଇଥିଲେ। ଏହି ଗସ୍ତବେଳେ ମହାତ୍ମାଜୀ ପଣ କରିଥିଲେ, ଦରିଦ୍ର ଓଡ଼ିଆ ଗଣ୍ଡିଏ ଖାଦ୍ୟ ଓ ଖଣ୍ଡିଏ ଲୁଗା ପାଇବା ପର୍ଯ୍ୟନ୍ତ ସେ ବଡ଼ ଧୋତି ପିନ୍ଧିବେ ନାହିଁ। ସେ କହିଥିଲେ, ''ଓଡ଼ିଶା ହିଁ ଭାରତୀୟ ଦାରିଦ୍ର୍ୟର ସଂକ୍ଷିପ୍ତ ସାର।''

# ''ସମାଜ''

ଓଡ଼ିଶୀ ସାଂବାଦିକତା ବିକାଶ ଲାଭ କରି ନ ଥିଲା । ଗୌରୀଶଙ୍କରଙ୍କ ଦ୍ୱାରା ପ୍ରତିଷ୍ଠିତ କଟକ ପ୍ରିଣ୍ଟିଂ କମ୍ପାନୀର ପ୍ରକାଶିତ ''ଉତ୍କଳ ଦୀପିକା'' ଏକମାତ୍ର ସଂବାଦପତ୍ର ଥିଲା । ଏହା ଗୋଟିଏ ନରମ ପନ୍ଥୀ ସଂବାଦପତ୍ର ହୋଇଥିବାରୁ ଗୋପବନ୍ଧୁ ଓ ତାଙ୍କ ସହକର୍ମୀମାନଙ୍କ ଚରମ ପନ୍ଥୀ ମତକୁ ପ୍ରଚାର କରିବା ଲାଗି ଏହି ସଂବାଦ ପତ୍ର ପ୍ରବୃତ୍ତ ହୋଇ ନ ଥିଲା । ତେଣୁ ବ୍ରହ୍ମପୁରର ଶଶୀ ଭୂଷଣ ରଥ ଗୋଟିଏ ସଂବାଦପତ୍ର ପ୍ରକାଶ କରନ୍ତୁ ବୋଲି ଗୋପବନ୍ଧୁ ପରାମର୍ଶ ଦେଲେ ଏବଂ ସେ 1913ରେ ''ଆଶା''ନାମକ ଗୋଟିଏ ସଂବାଦପତ୍ର ପ୍ରକାଶ କଲେ । ନିଜେ ଗୋପବନ୍ଧୁ ଏହାର ଏପରି ନାମକରଣ କରିଥିଲେ । ଗୋପବନ୍ଧୁ ସାକ୍ଷୀଗୋପାଳ ଠାରୁ 1919 ପର୍ଯ୍ୟନ୍ତ ଏହାର ସଂପାଦନା କରୁଥିଲେ; କିନ୍ତୁ ମାନ୍ଦ୍ରାଜ ପ୍ରଦେଶରେ ଥିବା ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହରରୁ ଏହା ପ୍ରକାଶିତ ହେଉଥିଲା ।

ବିଧାନ ପରିଷଦର ସଭ୍ୟ ଥିବାବେଳେ ସେ ନିଜର ଗୋଟିଏ ସଂବାଦପତ୍ରର ଅଭାବ ଅନୁଭବ କଲେ । ତିନି ଗୋଟି କାରଣରୁ ସେ ଏ କଥା ଭାବିଲେ । ପ୍ରଥମରେ 1919 ରେ ଡୋଭାର ଦୁର୍ଭିକ୍ଷ ବେଳେ ସେ ଦେଖିଲେ ଯେ କଟକରେ ଥିବା ଓଡ଼ିଶାର ସ୍ଥାନୀୟ କର୍ତ୍ତୃପକ୍ଷ ଏହି ଅଞ୍ଚଳକୁ ଦୁର୍ଭିକ୍ଷ ପ୍ରପୀଡ଼ିତ ବୋଲି ଘୋଷଣା କରି ଏଠାରେ ଦୁର୍ଭିକ୍ଷ ନିୟମାବଳୀ ପ୍ରୟୋଗ କରିବାକୁ ଚାହିଁଲେ ନାହିଁ । ସେ ନିଜେ ଏହି ଅଞ୍ଚଳର ପରିସ୍ଥିତି ସଂବନ୍ଧରେ ବିଶଦ ବିବରଣୀ ଦେବାରୁ ଛୋଟଲାଟ ସାର୍ ଏଡୁଆର୍ଡ଼ ଗେଟ୍ ନିଜେ ଆସି ଗସ୍ତ କଲେ । ନିଜର ଗୋଟିଏ ସଂବାଦପତ୍ର ଥିଲେ ସେ ବହୁ ଆଗରୁ ଏପରି ବର୍ଣ୍ଣନା ପ୍ରକାଶ କରି ଦେଶର ବିଭିନ୍ନ ପ୍ରାନ୍ତରୁ ଫଳପ୍ରଦ ସାହାଯ୍ୟ ଆଣିବା ଲାଗି ବ୍ୟବସ୍ଥା କରି ପାରିଥାନ୍ତେ । ଦ୍ୱିତୀୟରେ ଜାଲିଆନାୱାଲାବାଗରେ ସଂଘଟିତ ନୃଶଂସ ହତ୍ୟାକାଣ୍ଡର ସଂବାଦ ଭାରତୀୟ ଜନସାଧାରଣଙ୍କ ଭାବାବେଗ ଉଦ୍ରେକ କରିଥିଲା ଓ ଦେଶ ସାରା ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା । ଲୋକେ ନିଜ ମନୋଭାବ ବ୍ୟକ୍ତ କରିବାକୁ କୌଣସି ମାଧ୍ୟମ ପାଇଲେ ନାହିଁ । ଶେଷରେ ଓଡ଼ିଶା ଲୋକଙ୍କର ଅନେକ ଅଭାବ ଅଭିଯୋଗ ଥିଲା, ଯାହାର ତୁରନ୍ତ ସମାଧାନ ଲୋଡ଼ାଥିଲା କିନ୍ତୁ ପ୍ରାଦେଶିକ ସରକାର ପାଞ୍ଚ ଶହରୁ ଅଧିକ ମାଇଲ ଦୂରରେ ଥିବା ପାଟଣା ସହରରୁ ଓଡ଼ିଶାକୁ ଶାସନ କରୁଥିଲେ । ଓଡ଼ିଶା, ବଙ୍ଗଳାର ଅଂଶ ରୂପେ ଥିବା ବେଳେ ବେଶି ସୁବିଧାଜନକ ଥିଲା କାରଣ ପ୍ରାଦେଶିକ ରାଜଧାନୀ ଥିବା କଲିକତା ସହର ମୋଟେ ଅଢ଼େଇ ଶହ ମାଇଲ ଦୂରରେ ଥିଲା । ସଂବାଦପତ୍ରଟିଏ ଥିଲେ ତାହା

ଜନସାଧାରଣଙ୍କ ହାରି ଗୁହାରୀ ପ୍ରକାଶ କରି ସେ ଗୁଡ଼ିକର ସମାଧାନ ବ୍ୟବସ୍ଥା କରାଇବା ସଂଗେ ସଂଗେ ପ୍ରଦେଶର ବିଭିନ୍ନ ଲୋକଙ୍କ ମଧ୍ୟରେ ରାଜନୈତିକ ଚେତନା ସୃଷ୍ଟି କରି ପାରିଥାନ୍ତା। ଏହି ତିନି ଗୋଟି କାରଣ ଯୋଗୁ ଗୋପବନ୍ଧୁ ସତ୍ୟବାଦୀର ଅଭିନବ ଶିକ୍ଷାଗତ ପରୀକ୍ଷଣର ଅଂଶ ବିଶେଷ ରୂପେ ନିଜେ ଗୋଟିଏ ସଂବାଦପତ୍ର ପ୍ରକାଶ କରିବାକୁ ସ୍ଥିର କଲେ।

ସଂବାଦପତ୍ର ପ୍ରକାଶ ଗୋଟିଏ ବ୍ୟୟସାଧ୍ୟ କାର୍ଯ୍ୟ ଓ ଗୋପବନ୍ଧୁ ଜଣେ ଦରିଦ୍ର ଲୋକ। ତେଣୁ ସେ ବିଧାନ ପରିଷଦର ସଭ୍ୟ ଭାବରେ ଯେଉଁ ଭତ୍ତା ପାଇଥିଲେ, ତାହାକୁ ସଞ୍ଚୟ କରି ରଖିଥିଲେ। ଥରେ ସେ ବାକିଆ ଭତ୍ତା ବାବଦ ଷୋହଳ ଶହ ଟଙ୍କା ଆଣି ସାକ୍ଷୀଗୋପାଳ ଆସିଲେ। ରାତିରେ ସେ ମନ୍ଦିର ବଙ୍ଗଳାରେ ଶୋଇଥିବା ବେଳେ ସେତକ ଟଙ୍କା ଚୋରୀ ହୋଇଗଲା। ଏହି ଦୁର୍ଘଟଣା ଯୋଗୁ ଗୋପବନ୍ଧୁ ବ୍ୟଥିତ ହେଲେ ହେଁ ସେ ନିଜ ଲକ୍ଷ୍ୟାନୁସରଣରୁ ବିରତ ହୋଇ ନ ଥିଲେ।

ପୁରୀର ଜଣେ ସାଂବାଦିକ ସତ୍ୟବାଦୀ ତ୍ରିପାଠୀ, ଯେ କି ସତ୍ୟବାଦୀ ବନ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ, ପରେ ସତ୍ୟବାଦୀ ପ୍ରେସର ପ୍ରଥମ ପରିଚାଳକ ନିଯୁକ୍ତ ହୋଇ ଲେଖିଛନ୍ତି ଯେ, ସେ ଗୋପବନ୍ଧୁଙ୍କ ଠାରୁ ଷୋହଳ ଶହ ଟଙ୍କା ନେଇ ସେ କାଳର ପୁରୀ ଏମାର ମଠ ମହନ୍ତ ମହାରାଜାଙ୍କ ମଦନମୋହନ ପ୍ରେସରେ ଥିବା ଗୋଟିଏ ହାତଚଳା ଛାପାକଳ କିଣି ମରିଚ଼ୀକୋଟ ଗଳିରେ ଥିବା ମହାବୀର ଧର୍ମଶାଳାରେ ରଖିଥିଲେ।

ସେ ନିଜେ ଗୋଟିଏ ବଳଦ ଗାଡ଼ିରେ ଏହି ଛାପାକଳକୁ ପୁରୀରୁ ସାକ୍ଷୀଗୋପାଳକୁ ଆଣିଥିଲେ ଏବଂ ସତ୍ୟବାଦୀ ବିଦ୍ୟାଳୟ ନିକଟରେ ଥିବା ଗୋଟିଏ ଚାଳ ଘରେ ଏହି ପ୍ରେସ ସ୍ଥାପିତ ହେଲା। ଏହି ପ୍ରେସର ନାମ ରହିଲା 'ସତ୍ୟବାଦୀ ପ୍ରେସ' ଏବଂ ଆଗରୁ ବ୍ରହ୍ମପୁରରେ ଛାପା ହେଉଥିବା ସତ୍ୟବାଦୀ ନାମକ ମାସିକ ପତ୍ରିକା ତେଣିକି ଏହି ଛାପାଖାନାରେ ମୁଦ୍ରିତ ହେଲା। ଏହି ପତ୍ରିକାଟି ସାହିତ୍ୟ ପତ୍ରିକା ଥିଲା ଓ ଏଥିରେ ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କ ରଚନା ପ୍ରକାଶିତ ହେଉଥିଲା। ଏହାର ପ୍ରସାର ମୁଷ୍ଟିମେୟ ଶିକ୍ଷିତ ଲୋକଙ୍କ ଭିତରେ ସୀମାବଦ୍ଧ ଥିଲା। ଏତଦ୍ୱାରା ସାଧାରଣ ଲୋକେ ଉପକୃତ ହେଉ ନ ଥିଲେ ବୋଲି ଗୋପବନ୍ଧୁଙ୍କ ଅଭିଳାଷକୁ ଏହି ପତ୍ରିକା ପୂରଣ କରି ପାରି ନ ଥିଲା।

ଗୋପବନ୍ଧୁ ପ୍ରଥମେ ଗୋଟିଏ ସାପ୍ତାହିକ ସଂବାଦପତ୍ର ପ୍ରକାଶ କଲେ। ଏହାର ନାମ ରଖିଲେ 'ସମାଜ'। ଏହି ନାମକରଣ ପଛରେ ଗୋପବନ୍ଧୁଙ୍କର ଗୋଟିଏ ଉଦ୍ଦେଶ୍ୟ ଥିଲା ଓ ସେ ଏହାର ତାତ୍ପର୍ଯ୍ୟ 'ସମାଜ'ର ପ୍ରଥମ ସଂଖ୍ୟାରେ ବୁଝାଇ ଦେଇଥିଲେ। ସମାଜର ଗଣ୍ଡି ଭିତରେ ଥିବା ସବୁ ଶ୍ରେଣୀର ଲୋକଙ୍କ ପାଇଁ ଏହି ସଂବାଦପତ୍ର ଉଦ୍ଦିଷ୍ଟ ଥିଲା। ସମାଜ ଗୋଟିଏ ଆଙ୍ଗିକ ଏକକ ହେଲେ ହେଁ ଲୋକମାନଙ୍କ ମଧ୍ୟରେ ନାନା ପ୍ରକାର ବିଭେଦ ଥିଲା। ସମାଜରେ ଧନୀ ଓ ଦରିଦ୍ର ଉଭୟ ଶ୍ରେଣୀର ଲୋକ ଅଛନ୍ତି; ଏପରିକି ମୁଷ୍ଟିମେୟ ଲୋକଙ୍କ ଧନ ହିଁ ବହୁ ସଂଖ୍ୟକ

ଲୋକ-ଦାରିଦ୍ର୍ୟର କାରଣ । ବହୁକାଳ ପର୍ଯ୍ୟନ୍ତ ଲୋକେ ବିଶ୍ୱାସ କରୁଥିଲେ, ଦାରିଦ୍ର୍ୟ କେବଳ ପୂର୍ବଜନ୍ମର ଫଳ ଏବଂ ମଣିଷ ଚେଷ୍ଟା କରି ଏହାକୁ ଦୂର କରି ପାରିବ ନାହିଁ । ଏହି ଭ୍ରାନ୍ତ ଧାରଣା କ୍ରମେ ଦୃଢ଼ୀଭୂତ ହୋଇଥିଲା । ସମାଜର ନେତାମାନେ ଉପଲବ୍ଧି କଲେ ଯେ ଲୋକଙ୍କ ଦାରିଦ୍ର୍ୟ ଦୂର କରି ସମାଜକୁ ଉନ୍ନତ କରିବାକୁ ହେଲେ ଲୋକଙ୍କ ଇଚ୍ଛା ସଂକଳ୍ପ ପ୍ରକାଶିତ ହେବା ଲାଗି ସୁବିଧା ଥିବା ଆବଶ୍ୟକ । ''ସମାଜ'' ଏହି ଲକ୍ଷ୍ୟ ଲାଭପାଇଁ ଉଦ୍ଦିଷ୍ଟ । ''ସମାଜ''ର ତୃତୀୟ ସଂଖ୍ୟାରେ ପତ୍ରିକାର ଉଦ୍ଦେଶ୍ୟ ବର୍ଣ୍ଣନା କରିବାକୁ ଯାଇ ଗୋପବନ୍ଧୁ ଲେଖିଥିଲେ,''ପ୍ରତି ସପ୍ତାହର ଶନିବାର ଦିନ ସତ୍ୟବାଦୀ ପ୍ରେସରୁ ସମାଜ ବାହାରେ । ଏଥିରେ ଦେଶର ହାଲଚାଲ ଆଲୋଚନା ହୁଏ । ଏଥିରେ ଗାଉଁଲୀ ଲୋକମାନଙ୍କ ଦୁଃଖ ଗୁହାରୀ ପ୍ରକାଶ ପାଏ; ସରକାର ଲୋକଙ୍କ ବିଷୟରେ ଯାହା ଜାଣିବା ଉଚିତ, ସେ କଥା ବି ଆଲୋଚନା କରାଯାଏ । ଆଉ ପାଖରେ ସରକାରୀ ନୀତି ଓ କାର୍ଯ୍ୟକଳାପ ସମ୍ବନ୍ଧରେ ଲୋକଙ୍କୁ ବୁଝାଇ ଦିଆଯାଏ । ଗାଁ' ଗହଳର ଲୋକମାନଙ୍କ ସ୍ୱାସ୍ଥ୍ୟ, ପ୍ରାଥମିକ ଶିକ୍ଷା, ଧର୍ମ, ଗ୍ରାମ ପଞ୍ଚାୟତ, ସମବାୟ ଆନ୍ଦୋଳନ, ସାମାଜିକ ଅବସ୍ଥା, କୃଷି, ଗ୍ରାମ୍ୟ ଶିଳ୍ପ ଓ ସେହିପରି ଅନ୍ୟାନ୍ୟ ସମସ୍ୟା ଗୁଡ଼ିକ ବିଷୟରେ ଆଲୋଚନା କରାଯାଏ । ସମାଜ ସରଳ ଓ ସହଜ ଭାଷାରେ ଲେଖା ହୁଏ । କେବଳ ଅକ୍ଷର ଶିଖିଥିବା ଲୋକେ ଏହାକୁ ପଢ଼ି ବୁଝି ପାରିବେ । ଏପରିକି ଜଣେ ପଢ଼ି ଶୁଣାଇ ଦେଲେ ମଧ୍ୟ ପାଠ ପଢ଼ି ନ ଥିବା ଲୋକେ ଏହାକୁ ବୁଝି ପାରିବେ ।''

ଚାରିପୃଷ୍ଠିଆ ''ସମାଜ''ର ପ୍ରଥମ ସଂପାଦକ ଥିଲେ, ନିଜେ ଗୋପବନ୍ଧୁ ଦାସ । ସାଧାରଣରେ ପ୍ରକାଶିତ ନ ହୋଇଥିଲେ ବି ପଣ୍ଡିତ କୃପାସିନ୍ଧୁ ମିଶ୍ର ଯୁଗ୍ମ ସଂପାଦକ ରୂପେ କାମ ତୁଲାଉ ଥିଲେ । ଗୋଟିଏ ଦୁଇ କୋଠରୀ ବିଶିଷ୍ଟ ଯାତ୍ରୀ ନିବାସରେ ସ୍ଥାପିତ ଏହି ହାତଚଳା ଛାପାଖାନାର ପ୍ରଥମ ପରିଚାଳକ ଥିଲେ ସତ୍ୟବାଦୀ ତ୍ରିପାଠୀ । ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନେ ନିଜ ଅନୁଷ୍ଠାନ ଦ୍ୱାରା ପ୍ରକାଶିତ ହେଉଥିବା ଏହି ସଂବାଦପତ୍ରକୁ ଦେଖି ଏପରି ଚମକୃତ ହୋଇଥିଲେ ଯେ ଅବସର ସମୟରେ ସେମାନେ ସ୍ୱେଚ୍ଛାସେବକଭାବରେ କାଗଜ କାଟିବା, ବାନ୍ଧିବା ଓ ଡ଼ାକରେ ପଠାଇବା ଆଦି କାର୍ଯ୍ୟ କରୁଥିଲେ ।

୧୯୧୨ରେ ଗୋପବନ୍ଧୁ ବାରଂବାର ସିଂହଭୂମି ଜିଲ୍ଲାରେ ଗସ୍ତ କରୁଥିଲେ । ଏହି ଗସ୍ତ ବେଳେ ସେ ସରକାରୀ ଚାକିରୀରେ ଥିବା ଜଣେ ମେଧାବୀ ଯୁବକଙ୍କ ସହିତ ପରିଚିତ ହେଲେ । ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଚମକରେ ଆକୃଷ୍ଟ ହୋଇ ଏହି ଯୁବକ ୧୯୧୨ ଅକ୍ଟୋବର ମାସରେ ସରକାରୀ ଚାକିରୀରୁ ଇସ୍ତଫା ଦେଇ ସାକ୍ଷୀଗୋପାଳ ଆସି ତାଙ୍କ ସହିତ ଯୋଗ ଦେଲେ । ସେ ହେଉଛନ୍ତି, ''ସମାଜ''ର ଅଧୁନାତନ ସଂପାଦକ ରାଧାନାଥ ରଥ । ସେ ବେଶ୍ ସୁଶ୍ରୀ, ବାଗ୍ମୀ ଓ ଆକର୍ଷଣୀୟ ବ୍ୟକ୍ତିତ୍ୱ ସଂପନ୍ନ ବ୍ୟକ୍ତି । ସେହି ୧୯୧୨ ରେ ସେ ''ସମାଜ''ର ପରିଚାଳକ ରୂପେ ନିଯୁକ୍ତ ହେଲେ । ତାଙ୍କ ତଳେ ସତ୍ୟବାଦୀ ବିଦ୍ୟାଳୟର ଜନୈକ ଛାତ୍ର ହରିହର ରଥ

ଯେ ପରେ ପ୍ୟାରୀମୋହନ ଏକାଡ଼େମୀରେ ଶିକ୍ଷକତା କରିଥିଲେ, ସହକାରୀ ପରିଚ଼ାଳକ ନିଯୁକ୍ତ ହେଲେ। ଏହି ସାଂବାଦିକ ପ୍ରଚ଼େଷ୍ଟାରେ ରାଧାନାଥ ରଥ ଆତ୍ମା ସ୍ୱରୂପ ଥିଲେ। ପରିଚ଼ାଳକ ଓ ସଂପାଦକ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବ୍ୟକ୍ତିଗତ ସହକାରୀ ରୂପେ ରାଧାନାଥ ସଂବାଦପତ୍ରର ସଂପାଦନା ଓ ପ୍ରକାଶନ ବିଷୟରେ ପୂର୍ଣ୍ଣ ଦାୟିତ୍ୱ ବହନ କରିଥିଲେ। ଗୋପବନ୍ଧୁ ସତ୍ୟବାଦୀରୁ ଅନୁପସ୍ଥିତ ଥିବା ବେଳେ ପଣ୍ଡିତ ନୀଳକଣ୍ଠ ଦାସ, ଆଚ଼ାର୍ଯ୍ୟ ହରିହର ଦାସ ଓ ରାମଚନ୍ଦ୍ର ରଥ ''ସମାଜ''ର ପ୍ରକାଶନ ବିଷୟରେ ବୁଝୁଥିଲେ। ଏହିପରି ଭାବରେ ''ସମାଜ''ର କ୍ରମୋନ୍ନତି ହେଲା।

ଗୋଟିଏ ସାପ୍ତାହିକ ସଂବାଦପତ୍ର ଭାବରେ ବି 'ସମାଜ'କୁ ବିଭିନ୍ନ ପରିସ୍ଥିତି ମଧ୍ୟ ଦେଇ ଗତି କରିବାକୁ ପଡ଼ିଥିଲା। ''ସତ୍ୟ ହୋଇଥିଲେ ସାଂଘାତିକ'' ଶୀର୍ଷକ ଗୋଟିଏ ସଂବାଦ 1921 ମସିହା ଅଗଷ୍ଟ 13 ତାରିଖ ଦିନ ଛାପିବା ଫଳରେ ପୁରୀ ଜିଲ୍ଲା ବେଗୁନିଆ ଥାନାର ଚାରି ଜଣ କନେଷ୍ଟବଳ ଗୋପବନ୍ଧୁଙ୍କ ବିରୁଦ୍ଧରେ ଭାରତୀୟ ପିଙ୍ଗଳ କୋର୍ଡ଼ର 499/500 ଦଫାରେ ଦାଏର କରିଥିବା ମାନହାନୀ ମୋକଦ୍ଦମା ହେଉଛି ପ୍ରଥମ ଘଟଣା। ଉକ୍ତ ଥାନାର ଦୁଇ ଜଣ କନେଷ୍ଟବଳ ଗୋଟିଏ ହାଟରେ ଜଣେ ସ୍ତ୍ରୀଲୋକ ଉପରେ ଅତ୍ୟାଚ଼ାର କରିଥିବା ବିଷୟ ଉକ୍ତ ସଂବାଦରେ ପ୍ରକାଶିତ ହୋଇଥିଲା। ପ୍ରାୟ ଦେଢ଼ ମାସ ଉକ୍ତ ସଂବାଦର ସତ୍ୟତା ସଂବନ୍ଧରେ ଗୋପବନ୍ଧୁଙ୍କର ସନ୍ଦେହ ଉପୁଜିବାରୁ ସେ 1921 ମସିହା ସେପ୍ଟେମ୍ବର 24 ତାରିଖ ଦିନ ଗୋଟିଏ ଭ୍ରମ ସଂଶୋଧନ ପ୍ରକାଶ କରିଥିଲେ; ତଥାପି ବିହାର ଓ ଓଡ଼ିଶା ପ୍ରଦେଶର ମୁଖ୍ୟ ଶାସନ ସଚ଼ିବଙ୍କ ପ୍ରରୋଚ଼ନାରେ ପୁରୀର ପୋଲିସ କର୍ତ୍ତୃପକ୍ଷ ସଂବାଦପତ୍ରର ସଂପାଦକ, ମୁଦ୍ରାକର ଓ ପ୍ରକାଶକଙ୍କ ବିରୁଦ୍ଧରେ ମୋକଦ୍ଦମା ଦାଏର କରିଥିଲେ। ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ବଡ଼ ଭାଇ ସୁରେଶ ଚନ୍ଦ୍ର ବୋଷ ଉକ୍ତ ମୋକଦ୍ଦମା ବିଚ଼ାର କରି ଗୋପବନ୍ଧୁଙ୍କୁ ସସମ୍ମାନେ ନିର୍ଦ୍ଦୋଷରେ ଖଲାସ କରି ଦେଇଥିଲେ ହେଁ 1921ମସିହା ଅକ୍ଟୋବର 28 ତାରିଖରୁ ନଭେମ୍ବର 29 ତାରିଖ ପର୍ଯ୍ୟନ୍ତ ପ୍ରାୟ ଏକ ମାସ କାଳ ବିଚ଼ାରାଧୀନ ବନ୍ଦୀ ରୂପେ ଜେଲରେ ଥିଲେ।

**ସଂପାଦକଙ୍କ କର୍ତ୍ତବ୍ୟ**

ସଂପାଦକଙ୍କ ଦାୟିତ୍ୱ ବିଷୟରେ ଗୋପବନ୍ଧୁଙ୍କର ଉଚ୍ଚ ଧାରଣା ଥିଲା। 1922 ମସିହା ଫେବୃଆରୀ 11 ତାରିଖ 'ସମାଜ'ରେ ସେ ଲେଖିଥିଲେ,'

''ସଂବାଦପତ୍ରରେ ଦେଶର ସଂବାଦ ପ୍ରକାଶ ପାଏ, ସବୁ ଅଞ୍ଚଳର ସଂବାଦ ଆସିଲେ ସଂପାଦକ ଖୁସୀ ହେବେ। ପ୍ରକୃତ ସଂବାଦ ମିଳିଲେ ସେ ଗୁଡ଼ିକୁ ଛାପିବା ତାଙ୍କ କର୍ତ୍ତବ୍ୟ, କିନ୍ତୁ କେଉଁ ସଂବାଦ ଛାପା ହେବ ଏବଂ ଏହି ସଂବାଦ ଛାପିବାରେ ସଂପାଦକଙ୍କର ଦାୟିତ୍ୱ କେତେ ଓ ସେ କେବେ ଏହାକୁ ଛାପିବେ, ସଂପାଦକଙ୍କ ବ୍ୟତୀତ ଆଉ କେହି ଏ କଥା ନିଷ୍ପତ୍ତି କରି ପାରିବେ ନାହିଁ। ବେଳେ ବେଳେ ଦେଖା ଯାଉଛି, କେତେ ଜଣ ସଂବାଦଦାତା ଏହି ନିଷ୍ପତ୍ତି କରିବା ଦାୟିତ୍ୱ ସଂପାଦକଙ୍କ ଠାରୁ ଛଡ଼ାଇ ନେବାକୁ ଚାହାନ୍ତି ଏବଂ ସେମାନଙ୍କ ସଂବାଦ ଛାପା ନ ହେଲେ

ଅଧୈର୍ଯ୍ୟ ହୋଇ ପଡୁଛନ୍ତି। କେତେକ ଘଟଣାରେ ସେମାନେ ଆମ କର୍ମଚାରୀମାନଙ୍କୁ ଗାଳି ଦେଉଛନ୍ତି, ସେମାନଙ୍କ ଅଞ୍ଚଳରେ ପତ୍ରିକାର ପ୍ରସାର ବନ୍ଦ କରି ଦେବେ ବୋଲି ଧମକ ଦେଉଛନ୍ତି। ସେମାନେ ବୁଝିବା ଉଚିତ ଯେ ସବୁ ଦରକାରୀ ଓ ଉପାଦେୟ ସଂବାଦକୁ ସଂବାଦପତ୍ରଗୁଡ଼ିକ ଛାପିବାକୁ ଚାହାନ୍ତି ଏବଂ ଏପରି ସଂବାଦକୁ ସଂପାଦକ ଅମୂଲ୍ୟ ସଂପଦ ବୋଲି ମଣନ୍ତି, କିନ୍ତୁ ଜଣେ ଯାହା ଲେଖିଲେ ବି ଛାପା ହେବ ବୋଲି ଆଶା କରିବା ଅନ୍ୟାୟ। କେତେକ ସ୍ଥଳରେ ସତ୍ୟାସତ୍ୟ ଅନୁସନ୍ଧାନ ନ କରି ସାଂବାଦିକମାନେ ସଂବାଦ ପଠାଉଛନ୍ତି। ସଂବାଦର ସତ୍ୟତାରେ ସନ୍ଦେହ ଥିଲେ ତାକୁ ଛାପିବା ନିରାପଦ ନୁହେଁ; ସେହିପରି ପ୍ରତିକାରର ଅନ୍ୟ ପନ୍ଥା ଥିଲେ ମଧ୍ୟ ଛାପିବା ଅନୁଚିତ। ଓଡ଼ିଶାର ଗାଉଁଲୀ ଲୋକଙ୍କ ପାଇଁ ସମାଜ ଛପା ହେଉଛି। ସେମାନେ କେତେ ଶିକ୍ଷିତ ଆମେ ଜାଣୁ, ତେଣୁ ଆମେ ସଂବାଦଗୁଡ଼ିକୁ ଯାଞ୍ଚ କରି କେବଳ ସମୟୋପଯୋଗୀ ଓ ଉଚିତ ସଂବାଦ ଛାପୁଛୁ। କାର୍ଯ୍ୟର ଚାପ ଯୋଗୁ ବେଳେ ବେଳେ ଦରକାରୀ ସଂବାଦ ଆମ ଦୃଷ୍ଟିରେ ନ ପଡ଼ିପାରେ, ସେଥିପାଇଁ ଆମେ ଦୁଃଖିତ।''

ଗୋପବନ୍ଧୁଙ୍କ ବିରୁଦ୍ଧରେ ହୋଇଥିବା ମୋକଦ୍ଦମା ବିଫଳ ହେବା ପରେ ପୁରୀର ଜିଲ୍ଲା ମାଜିଷ୍ଟ୍ରେଟ୍ 'ସମାଜ'ଠାରୁ ଦୁଇ ହଜାର ଟଙ୍କା ଅମାନତ ଦାବୀ କରିଥିଲେ, କିନ୍ତୁ ସଂପାଦକ ସବୁ ବେଳେ ଗସ୍ତରେ ରହୁ ଥିବାରୁ ଅମାନତ ଦାବୀ ନୋଟିସ ତାଙ୍କ ଉପରେ ଜାରୀ କରାଯାଇ ପାରିଲା ନାହିଁ। 1922 ମସିହା ମଇ ମାସ 31 ତାରିଖ ଦିନ ଗୋପବନ୍ଧୁ ଗିରଫ ହେଲେ ଏବଂ ଦଣ୍ଡବିଧି ଆଇନର 144 ଧାରା ଅନୁସାରେ ଦିଆ ଯାଇଥିବା ଆଦେଶକୁ ଅମାନ୍ୟ କରିବା ଫଳରେ ସେ ଦୁଇ ବର୍ଷ ଅଶ୍ରମ କାରାଦଣ୍ଡ ପାଇଲେ। ତାଙ୍କ ଅନୁପସ୍ଥିତିରେ ଆଚାର୍ଯ୍ୟ ହରିହର ଦାଶ 1922 ମସିହା ଜୁନ 10 ତାରିଖଠାରୁ 'ସମାଜ'ର ସଂପାଦକ, ମୁଦ୍ରାକର ଓ ପ୍ରକାଶକ ଦାୟିତ୍ୱ ବହନ କଲେ। ଅସହଯୋଗୀ ହିସାବରେ ଗୋପବନ୍ଧୁ ଇଂରେଜ ପରିଚାଳିତ ନ୍ୟାୟାଳୟକୁ ବର୍ଜନ କରିଥିବାରୁ ସଫେଇ ଦେଇ ନ ଥିଲେ। ମୋକଦ୍ଦମା ଏକତରଫା ବିଚାର ହୋଇ ତାଙ୍କୁ ଦଣ୍ଡ ଦିଆ ଯାଇଥିଲା।

## 'ସମାଜ' ପୁରୀକୁ ଗଲା

ଜେଲରୁ ଖଲାସ ହେବା ପରେ ଗୋପବନ୍ଧୁ ସଂପାଦକ ଦାୟିତ୍ୱ ପୁନର୍ବାର ବହନ କଲେ ଏବଂ ଆଚାର୍ଯ୍ୟ ହରିହର ଦାଶ କେବଳ ମୁଦ୍ରାକର ଓ ପ୍ରକାଶକ ହୋଇ ରହିଲେ।

ଗୋଟିଏ ସଂବାଦପତ୍ର ଭାବରେ 'ସମାଜ'ର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା ଏହାକୁ ବେଶି ସାହସୀ କଲା, ଫଳରେ ଏହା ବେଶି ଫଳପ୍ରଦ ଭାବରେ ଲୋକ ସେବା କରି ପାରିଲା ସିନା, ଏହାର ବିପଦ ମଧ୍ୟ ସେହି ଅନୁସାରେ ବଢ଼ିଲା। 1924 ମଇ ମାସରେ ପାରିକୁଦରେ ପୋଲିସ ଦମନ ବିଷୟରେ ଗୋଟିଏ ସଂବାଦ ପ୍ରକାଶିତ ହେଲା। ଏହି ସଂବାଦ କିଏ ଦେଲା ବୋଲି ଜାଣିଲେ ତାଙ୍କ ନାମରେ ମୋକଦ୍ଦମା ଦାଏର କରିବା ଲାଗି ପୋଲିସ କର୍ତ୍ତୃପକ୍ଷ ସଂବାଦଦାତାଙ୍କ ନାମ ଜାଣିବାକୁ ଦାବୀ

କଲେ, କିନ୍ତୁ ଉଚ୍ଚ ସଂପାଦକୀୟ ମାନ ରକ୍ଷା କରି ଗୋପବନ୍ଧୁ ସଂବାଦଦାତାଙ୍କ ନାମ ପ୍ରକାଶ କରିବାକୁ ମନାକଲେ। ଏଥିରେ କ୍ରୋଧାନ୍ୱିତ ହୋଇ ପୋଲିସ 'ସମାଜ' ଅଫିସକୁ ଖାନତଲାସ କରି ମୁଦ୍ରାକର ଓ ପ୍ରକାଶକଙ୍କ ବିରୁଦ୍ଧରେ ମୋକଦ୍ଦମା କରିବା ଫଳରେ ତାଙ୍କୁ ଶହେ ଟଙ୍କା ଜୋରିମାନା ହୋଇଥିଲା।

## ଗୋପବନ୍ଧୁଙ୍କ ମୃତ୍ୟୁ ପରେ 'ସମାଜ'

1928 ମସିହା ଜୁନ 17 ତାରିଖ ଦିନ ଗୋପବନ୍ଧୁ ସ୍ୱର୍ଗାରୋହଣ କଲେ। ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ 'ସମାଜ'କୁ ଲାହୋରର ଲୋକ ସେବକ ମଣ୍ଡଳ ହାତରେ ନ୍ୟସ୍ତ କରି ଦେଇଥିଲେ। ମଣ୍ଡଳ ଯେପରି 'ସମାଜ'ର ଲାଭକୁ ନିଜ ପାଇଁ ବ୍ୟବହାର ନ କରିପାରେ, ସେଥିପାଇଁ ସେ ପ୍ରତ୍ୟକ୍ଷ ବ୍ୟବସ୍ଥା କରିଥିଲେ। ନ୍ୟାସ ଦଲିଲରେ ଲେଖା ହୋଇଥିଲା ଯେ ଏହି ଲାଭାଂଶ ଓଡ଼ିଶାର ସାମାଜିକ, ରାଜନୈତିକ ଓ ଶିକ୍ଷାଗତ ଉନ୍ନତି ଲାଗି ବ୍ୟୟିତ ହେବ। କେତେକଙ୍କ ମତରେ 'ସମାଜ'ର ଅଧୁନାତନ ସମୃଦ୍ଧି ଗୋପବନ୍ଧୁଙ୍କ ଦୂରଦୃଷ୍ଟିର ପରିଚାୟକ।

ଦଶ ବର୍ଷରୁ ଊର୍ଦ୍ଧ୍ୱ କାଳ ପର୍ଯ୍ୟନ୍ତ କ୍ରମୋନ୍ନତି ଫଳରେ 'ସମାଜ' ଓଡ଼ିଶାର ଜନସାଧାରଣଙ୍କ ଭିତରେ ଏପରି ଲୋକପ୍ରିୟ ହୋଇଛି ଯେ ସେମାନେ 'ସମାଜ' ଓ ସଂବାଦପତ୍ରକୁ ସମାନ ଅର୍ଥରେ ବ୍ୟବହାର କରନ୍ତି। ପରିଚାଳକମାନେ ବିଚାର କଲେ ଯେ 'ସମାଜ' ଗୋଟିଏ ଦୈନିକ ସଂବାଦପତ୍ର ହୋଇ ପାରିଲେ ଆଇନ ଅମାନ୍ୟ ଆନ୍ଦୋଳନ ସଂବନ୍ଧରେ ତଟକା ଖବର ଲୋକଙ୍କୁ ଯୋଗାଇ ପାରନ୍ତା। ଏହି ଉଦ୍ଦେଶ୍ୟରେ 1930 ମସିହା ଅପ୍ରେଲ 6 ତାରିଖ ଠାରୁ ଦୁଇ ପୃଷ୍ଠା ଡବଲ କ୍ରାଉନ ଆକାରରେ ଓ ଗୋଟିଏ ପଇସା ମୂଲ୍ୟରେ 'ସମାଜ'ର ଦୈନିକ ସଂସ୍କରଣ ପ୍ରକାଶ ପାଇଲା।

ଗୋପବନ୍ଧୁଙ୍କୁ ଓଡ଼ିଆ ସାଂବାଦିକତାର ଜନକ କୁହାଯାଇ ପାରେ। ବ୍ରହ୍ମପୁରରୁ ଶଶୀ ଭୂଷଣ ରଥଙ୍କ ସଂପାଦନାରେ ପ୍ରକାଶିତ 'ଦୈନିକ ଆଶା' ସର୍ବ ପ୍ରଥମ ଦୈନିକ ସଂବାଦପତ୍ର ହୋଇଥିଲେ ବି ଏହା ଗୋପବନ୍ଧୁଙ୍କ ପ୍ରେରଣାରେ ପ୍ରକାଶିତ ହେଉଥିଲା ଓ ନିଜେ ଗୋପବନ୍ଧୁ ଛଅ ବର୍ଷ କାଳ ଏହାର ସଂପାଦକୀୟ ଲେଖୁଥିଲେ। ଏହା ଅବଶ୍ୟ ସତ୍ୟ ଯେ 'ସମାଜ'କୁ ଦୈନିକ ସଂବାଦପତ୍ର ଆକାରରେ ଦେଖିବା ପାଇଁ ଗୋପବନ୍ଧୁ ନ ଥିଲେ, କାରଣ ଦୁଇବର୍ଷ ଆଗରୁ ତାଙ୍କର ପରଲୋକ ହୋଇ ଯାଇଥିଲା।

ଗୋପବନ୍ଧୁଙ୍କର ଉଚ୍ଚ ସମ୍ମାନ ଜ୍ଞାନ ଓ ଉଚ୍ଚତର ସାଂବାଦିକ ନୈତିକତାବୋଧ ଥିଲା। ଜଣେ ଓକିଲ ହିସାବରେ ସେ ମିଛ ମୋକଦ୍ଦମା କରୁ ନ ଥିଲେ ଏବଂ ସଂପାଦକ ଭାବରେ ସେ ମିଥ୍ୟା ଓ ଅତିରଞ୍ଜିତ ସଂବାଦ ପ୍ରକାଶ କରୁ ନ ଥିଲେ। ତଥାପି ଏହା ଗୋଟିଏ ବିଡ଼ମ୍ବନା ଯେ ଗୋଟିଏ ନାରୀ ଧର୍ଷଣ ସଂବାଦ, ଯାହାକୁ କି କର୍ତ୍ତୃପକ୍ଷ ମିଛ ବୋଲି ଭାବିଲେ, ଛାପି ସେ ଜୀବନର ପ୍ରଥମ ମୋକଦ୍ଦମାର ସମ୍ମୁଖୀନ ହୋଇଥିଲେ।

ଗୋପବନ୍ଧୁଙ୍କର ଗୋଟିଏ ଅନନୁକରଣୀୟ ସାଂବାଦିକ ଶୈଳୀ ଥିଲା । ତାଙ୍କ ସଂବାଦପତ୍ର ମଫସଲର ଅପାଠୁଆ ଲୋକେ ପଢ଼ିବା ପାଇଁ ଉଦ୍ଦିଷ୍ଟ ଥିଲା ବୋଲି ସେ ଏପରି ଶୈଳୀ ଓ ଭାଷା ବ୍ୟବହାର କରୁଥିଲେ ଯାହା କି ସାଧାରଣ ଲୋକେ ବୁଝି ପାରିବେ । ତାଙ୍କୁ ଓଡ଼ିଆ ସାହିତ୍ୟର ଏକ ନୂଆ ଗଦ୍ୟ ଶୈଳୀର ପ୍ରବର୍ତ୍ତକ ବୋଲି ବିବେଚନା କରଯାଏ ।

ଆଜିକାଲି 'ସମାଜ' ଗୋଟିଏ ସମୃଦ୍ଧିଶାଳୀ ସଂବାଦପତ୍ର ଓ ଏହାର ଏକ ନିଜସ୍ୱ ଅଟ୍ଟାଳିକା ଅଛି । ସାକ୍ଷୀଗୋପାଳର ଗୋଟିଏ କୁଡ଼ିଆ ଘରେ ଆରମ୍ଭ ହୋଇ ଏହା ବର୍ତ୍ତମାନ ଅବସ୍ଥାକୁ ଆସିଛି ଏବଂ ଏତଦ୍ୱାରା ସ୍ଥାପୟିତା ଗୋପବନ୍ଧୁ ଦାସଙ୍କ ସ୍ୱପ୍ନ ସଫଳ ହୋଇଛି ।

1920 ଅସହଯୋଗ ଆନ୍ଦୋଳନ କାର୍ଯ୍ୟକଳାପ ଯୋଗୁଁ ଗୋପବନ୍ଧୁ କର୍ତ୍ତୃପକ୍ଷଙ୍କ ଚକ୍ଷୁଶୀଳ ହୋଇଥିଲେ । ସରକାର ଯେ କୌଣସି ଉପାୟରେ ଏହି ମହାନ୍ ଦେଶ ପ୍ରେମୀଙ୍କୁ ଆଘାତ ଦେବାକୁ ବ୍ୟଗ୍ର ଥିଲେ, କିନ୍ତୁ ତାଙ୍କୁ ସହଜରେ ସୁବିଧା ମିଳୁ ନ ଥିଲା । ତେଣୁ ସମାଜରେ ପ୍ରକାଶିତ ଏକ ସଂବାଦକୁ ଧରି ସେମାନେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଅଭିଯୁକ୍ତ କରିଥିଲେ ।

# ଅସହଯୋଗ ଓ କାରାବାସ

ଗୋପବନ୍ଧୁ ଓଡ଼ିଶାରେ ଜାତୀୟ କଂଗ୍ରେସର ଭଗୀରଥ ଥିଲେ। ସେ କଂଗ୍ରେସର ଜଣେ ଉଗ୍ର ପ୍ରଚାରକ ଥିଲେ, ଏବଂ କଂଗ୍ରେସର ବାର୍ତ୍ତା ପ୍ରଚାର କରିବା ଲାଗି ସେ ପ୍ରଦେଶର କୋଣେ କୋଣେ ବୁଲି ଥିଲେ। ପ୍ରତ୍ୟେକ ଲୋକ ଠାରୁ ପଇସାଟିଏ ମାତ୍ର ନେଇ ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କ ସ୍ମୃତି ରକ୍ଷା କରିବା ଓ କଂଗ୍ରେସ ପାଇଁ ପାଣ୍ଠି ସଂଗ୍ରହ କରିବା ଉଦ୍ଦେଶ୍ୟରେ ମହାତ୍ମା ଗାନ୍ଧି ଯେଉଁ 'ତିଳକ ସ୍ୱରାଜ୍ୟ ପାଣ୍ଠି' ଗଠନ କରିଥିଲେ ଗୋପବନ୍ଧୁ ସେଥି ପାଇଁ ଚାନ୍ଦା ଆଦାୟ କରିବାରେ ଲାଗି ପଡ଼ିଲେ, କାରଣ ଏହି ଚାନ୍ଦା ସଂଗ୍ରହ ଫଳରେ ପ୍ରତ୍ୟେକ ସାଧାରଣ ଲୋକ କଂଗ୍ରେସ ବ୍ୟାପାରରେ ଅଂଶ ଗ୍ରହଣ କରୁଛି ବୋଲି ଧାରଣା କରି ପାରିବ। କୌଣସି ବ୍ୟକ୍ତି ପଦାର୍ଥ ଆକାରରେ ଚାନ୍ଦା ଦେଲେ ତାହା ସଂଗେ ସଂଗେ ସାଧାରଣ ସଭାରେ ନିଲାମ ହୋଇ ଆଦାୟ ଧନ ଏହି ପାଣ୍ଠିରେ ଜମା ହେଉଥିଲା। ମାତୃଭୂମିର ସେବା କରିବା ଲାଗି ଯୁବକମାନଙ୍କୁ ନିୟୋଗ କରିବା ଲକ୍ଷ୍ୟରେ ସେ ଉତ୍କଳ ସ୍ୱାଧୀନତା ସେବା ଦଳ ଗଠନ କରିଥିଲେ। ଗୋପବନ୍ଧୁ ନିଜେ ପ୍ରାଦେଶିକ କଂଗ୍ରେସ କମିଟି ଗଢ଼ି ତାହାର ସଭାପତି ହୋଇଥିଲେ ଏବଂ ପ୍ରତି ଜିଲ୍ଲାରେ ଜିଲ୍ଲା କଂଗ୍ରେସ କମିଟି ଗଠନ କରାଇଥିଲେ। ଗୋପବନ୍ଧୁଙ୍କ ଉଦ୍ୟମ ଫଳରେ ଓଡ଼ିଶା ପ୍ରଦେଶରେ କଂଗ୍ରେସ ସୁପ୍ରତିଷ୍ଠିତ ହୋଇଥିଲା ଓ ସ୍ୱାଧୀନତା ପାଇଁ ଜନସାଧାରଣଙ୍କ ମନରେ ଅଦମ୍ୟ ଉତ୍ସାହ ଜାଗ୍ରତ କରିଥିଲା।

ଏହାକୁ ସ୍ଥାନୀୟ କର୍ତ୍ତୃପକ୍ଷ ନାପସନ୍ଦ କରି କଂଗ୍ରେସ ପାଇଁ ଗୋପବନ୍ଧୁଙ୍କ ଉତ୍ସାହକୁ ଦମନ କରିବାରେ ପ୍ରବୃତ୍ତ ହେଲେ। ତାଙ୍କ ଉପରେ ଦଣ୍ଡବିଧି ଆଇନ୍‌ର 144 ଧାରା ଅନୁସାରେ ନିଷେଧାଦେଶ ଜାରି ହେଲା ଓ ସେ ଯେଉଁଠାକୁ ଯାଉଥିଲେ ସେଠାରେ ତାଙ୍କୁ ସ୍ୱାଗତ କରିବାକୁ ଆସୁଥିବା ଜନତାକୁ ଉଦ୍‌ବୋଧନ ଦେବା ଲାଗି ବାରଣ କରାଗଲା। ଯେ କୌଣସି ଆଳରେ ତାଙ୍କୁ କାରାରୁଦ୍ଧ କରିବା ଲାଗି ସି.ଆଇ.ଡି. ପୋଲିସ ଚାହୁଁଥିଲେ। ବେଗୁନିଆ ଥାନାର କନେଷ୍ଟବଳମାନେ ଗୋଟିଏ ନାରୀକୁ ଧର୍ଷଣ କରିବା ବିଷୟରେ ପ୍ରକାଶିତ ସଂବାଦକୁ ଭିତ୍ତି କରି ଯେଉଁ ଫୌଜଦାରୀ ମୋକଦ୍ଦମା ରଜୁ କରାଯାଇ ଥିଲା, ଦେଶର ଉଚ୍ଚତମ କର୍ତ୍ତୃପକ୍ଷ ଏହି ଘଟଣାକୁ ଅତିରଞ୍ଜନ କରିବା ଲାଗି ଷଡ଼ଯନ୍ତ୍ର କରିଥିଲେ ହେଁ ସାକ୍ଷ୍ୟ ପ୍ରମାଣ ଅଭାବରୁ ତାହା ବିଫଳ ହୋଇଥିଲା। ନିର୍ଦ୍ଦୋଷରେ ଖଲାସ ହେବାପରେ ଗୋପବନ୍ଧୁ କଂଗ୍ରେସ

କାମରେ ସମ୍ବଲପୁର ଯାଇଥିଲେ। ସେ ଆଶା କରିଥିଲେ ଯେ ସେଠାରେ ପହଞ୍ଚିବା ମାତ୍ରକେ ତାଙ୍କ ଉପରେ ଫୌଜଦାରୀ ଦଣ୍ଡବିଧି ଆଇନର 144 ଧାରା ଅନୁସାରେ ତାଙ୍କ ଉପରେ ନିଷେଧାଦେଶ ଜାରି ହେବ କିନ୍ତୁ ତାଙ୍କ ଭାଗ୍ୟକୁ ଡେପୁଟୀ କମିଶନର ଗସ୍ତରେ ଥିଲେ ଏବଂ ଏଥିପାଇଁ ସେ ଗୋଟିଏ ବିରାଟ ସାଧାରଣ ସଭାରେ ଭାଷଣ ଦେଇ ସାରି ବିଦେଶୀ ଲୁଗା ପୋଡ଼ାଇ ଥିଲେ। ସେ ମଧ୍ୟ ମାନ୍ଦ୍ରାଜରେ ଥିବା ଓଡ଼ିଆଭାଷୀ ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାରେ ଗସ୍ତ କରିଥିଲେ । ସେ 1921 ମସିହା ସେପ୍ଟେମ୍ବର ମାସର ଶେଷ ସପ୍ତାହରେ କଲିକତା ଯାଇ ଚଟ କଳ ଓ ଲୁଗା କଳରେ ଚାକିରୀ କରୁଥିବା ଓଡ଼ିଆ ଶ୍ରମିକମାନଙ୍କର ଗୋଟିଏ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ। ସେ ବ୍ରହ୍ମପୁରକୁ ଫେରି ଆସିବା ମାତ୍ରକେ ତାଙ୍କ ଉପରେ 144 ଧାରା ଅନୁସାରେ ନିଷେଧାଦେଶ ଜାରି ହେଲା। ଏହି ନିଷେଧାଦେଶ ଗୁଡ଼ିକ ସତ୍ତ୍ୱେ ସେ ଯେଉଁଠାକୁ ଯାଉଥିଲେ ସେଠାରେ କଂଗ୍ରେସର ବାର୍ତ୍ତା ପ୍ରଚାର କରିବା ସଂଗେ ସଂଗେ ଦେଶର ମୁକ୍ତି ପାଇଁ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଯୋଜନାନୁସାରେ ବିଦେଶୀ ବସ୍ତ୍ର ବର୍ଜନ କରି ଖଦୀ ପିନ୍ଧିବା ଲାଗି ଜନସାଧାରଣଙ୍କୁ ଆହ୍ୱାନ କରୁଥିଲେ।

1921ରେ ପୁରୀ ଜିଲ୍ଲାରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା। ଲକ୍ଷ ଲକ୍ଷ ଲୋକ ଅନାହାରରେ ସଢୁଥିବାବେଳେ ଧାନ ଚାଉଳ ବାହାରକୁ ଚାଲାଣ କରିବା ବ୍ୟବସ୍ଥାକୁ ସେ ନାପସନ୍ଦ କରିଥିଲେ। ଏଥିପାଇଁ ସ୍ଥାନୀୟ ଅଧିକାରୀମାନଙ୍କୁ ସାକ୍ଷାତ କରି ଚାଲାଣ ବନ୍ଦ କରିବା ଲାଗି ଅନୁରୋଧ କରିଥିଲେ। ସେତିକି ବେଳେ ଅହମ୍ମଦାବାଦରେ ଅନୁଷ୍ଠିତ ହେବା ଲାଗି ଥିବା କଂଗ୍ରେସର ବାର୍ଷିକ ଅଧିବେଶନ ଲାଗି ପ୍ରତିନିଧି ନିର୍ବାଚନ କରିବା ପାଇଁ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ଶେଷ କରି ଖାସମାହାଲ ବାଙ୍କି ଅଞ୍ଚଳ ଗସ୍ତ କରିବାକୁ ଗଲେ। ଗୋପବନ୍ଧୁ ସେଠାରେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କଲେ। ସେଠାରେ ବିଷମ ପରିସ୍ଥିତି ଉପୁଜିବ ବୋଲି ଆଶଙ୍କା କରି ସରକାର ତାଙ୍କ ଉପରେ 144 ଧାରା ଅନୁସାରେ ନିଷେଧାଦେଶ ଜାରି କରି ବାଙ୍କିରେ ପ୍ରବେଶ ନ କରିବା ଲାଗି ନିର୍ଦ୍ଦେଶ ଦେଲେ। 1921 ମସିହା ଡିସେମ୍ବର ଦଶ ତାରିଖ ଦିନ ସରକାର ପ୍ରାଦେଶିକ ଓ ଜିଲ୍ଲା କଂଗ୍ରେସ କମିଟିର ମୁଖ୍ୟ କାର୍ଯ୍ୟାଳୟଗୁଡ଼ିକୁ ଖାନତଲାସ କରାଇଲେ, ଏପରିକି ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟ ଓ ଏହାର ଛାତ୍ରାବାସ ଏବଂ ଗୋପବନ୍ଧୁଙ୍କ ନିଜ ବାସସ୍ଥାନ ମଧ୍ୟ ଏହି ଖାନତଲାସରୁ ବାଦ ପଡ଼ି ନ ଥିଲା। ସେତେବେଳେ ଗୋପବନ୍ଧୁ ସାକ୍ଷୀଗୋପାଳରେ ରହୁଥିଲେ। ଯେତେବେଳେ ଲାଠି, ବେତ ଓ ବନ୍ଧୁକ ଧରି ଦଳେ ପୋଲିସ କନେଷ୍ଟବଳ ତାଙ୍କ ବାସ ଗୃହକୁ ଖାନତଲାସ କରିବାକୁ ପହଞ୍ଚିଲେ, ସେ ସେମାନଙ୍କ ଜିମା ଘରକୁ ଛାଡ଼ି ଦେଇ ଓ ଖାନତଲାସ କାର୍ଯ୍ୟରେ କୌଣସି ବାଧା ନ ଦେଇ ପ୍ରାଦେଶିକ କଂଗ୍ରେସ କମିଟିର ଏକ ବୈଠକରେ ଯୋଗ ଦେବା ଲାଗି କଟକ ଚାଲିଗଲେ। ସେ ସେଠାରେ ମଧ୍ୟ ସେହି ପରି ଦୃଶ୍ୟ ଦେଖିଲେ। ସବୁ ଜିଲ୍ଲାରୁ ମଧ୍ୟ ଖାନତଲାସ ଖବର ଆସି ପହଞ୍ଚିବାରେ ଲାଗିଲା। ସେଥିରୁ ଜଣା ପଡ଼ିଲା ଯେ ପୋଲିସର ଏହି ଅଯାଚିତ ଆକ୍ରମଣ ପୂର୍ବକଳ୍ପିତ

ଓ ସର୍ବବ୍ୟାପୀ ଥିଲା । ଏପରିକି ଗ୍ରାମଗୁଡ଼ିକ ମଧ୍ୟ ଏହି ଖାନତଲାସ ଯୋଜନାରେ ଅନ୍ତର୍ଭୁକ୍ତ ଥିଲେ । ଏହି ଆକ୍ରମଣ ଯୋଗୁଁ ଲୋକଙ୍କ ଉତ୍ସାହ କମିବା ପରିବର୍ତ୍ତେ ଭାରତର ସ୍ୱାଧୀନତା ପାଇଁ କାମ କରିବା ଲାଗି ସେମାନଙ୍କ ମନରେ ଦୃଢ଼ ସଂକଳ୍ପ ସୃଷ୍ଟି ହେଲା । ଗୋପବନ୍ଧୁ ଚେଷ୍ଟା କରି ଯାହା କରି ପାରି ନ ଥିଲେ, ପୋଲିସ୍‌ର ଆକ୍ରମଣ ତାହା କରି ଦେଇଥିଲା ।

କଂଗ୍ରେସ ଅଧିବେଶନରେ ଯୋଗ ଦେବା ଲାଗି ଗୋପବନ୍ଧୁ ଅହମ୍ମଦାବାଦ ଅଭିମୁଖେ ଯାତ୍ରା କଲେ । ସେଠାରୁ ଫେରି ସେ 1922 ମସିହା ଜାନୁଆରୀ ଦଶ ତାରିଖ ଦିନ କାଠଯୋଡ଼ି ବାଲିରେ ଗୋଟିଏ ସାଧାରଣ ସଭାରେ ଭାଷଣ ଦେବାର ଥିଲା । ସରକାର କୌଣସି ପ୍ରକାର ଆକସ୍ମିକତା ଏଡ଼ାଇବା ଉଦ୍ଦେଶ୍ୟରେ ତାଙ୍କ ଉପରେ 144 ଧାରା ଅନୁସାରେ ନିଷେଧାଦେଶ ଜାରି କରି ସଭାରେ ଉପସ୍ଥିତ ନ ହେବା ବା ଭାଷଣ ନ ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଆଇନର ବ୍ୟତିକ୍ରମ କରିବା ଯେ କୌଣସି ସତ୍ୟାଗ୍ରହୀ ପକ୍ଷରେ ସହଜ, ତେଣୁ ଗୋପବନ୍ଧୁ ସଭାକୁ ନ ଯାଇ ସେଠାରେ ପଢ଼ା ହେବା ଲାଗି ଗୋଟିଏ ଲିଖିତ ଭାଷଣ ପଠାଇ ଦେଲେ । କଟକର ଜିଲ୍ଲା ମାଜିଷ୍ଟ୍ରେଟ୍ ଏପରି ଆଚରଣକୁ ନିଜ ପ୍ରତି ବ୍ୟକ୍ତିଗତ ଅପମାନ ରୂପେ ବିବେଚନା କରି ଏପରି କ୍ରୋଧାନ୍ଧ ହୋଇଗଲେ ଯେ କୌଣସି ସଭାକୁ ଲିଖିତ ଭାଷଣ ନ ପଠାଇବା ଲାଗି ଗୋପବନ୍ଧୁଙ୍କ ଉପରେ ଆଉ ଗୋଟିଏ ଆଦେଶ ଜାରି କଲେ । ଫଳରେ କଟକରେ ରହି ମଧ୍ୟ ନାନା ନିଷେଧାଦେଶ ଯୋଗୁଁ ସେ କିଛି ଦରକାରୀ କାର୍ଯ୍ୟ କରି ପାରିବେ ନାହିଁ ବୋଲି ଜାଣିଲେ । ତେଣୁ ସେ ସିଂହଭୂମି ଗସ୍ତରେ ବାହାରି ଗଲେ । ସେଠାକାର ଡେପୁଟୀ କମିଶନର ଛୁଟିରେ ଥିବାରୁ ତାଙ୍କ କାମରେ ହସ୍ତକ୍ଷେପ ହୋଇ ନ ଥିଲା । ସେ କହ୍ଲଣ ଯାଉଥିବା ବେଳେ ରାସ୍ତାରେ କାର୍ଯ୍ୟବାହୀ ଡେପୁଟୀ କମିଶନରଙ୍କୁ ତାଙ୍କ କୋଠିରେ ସାକ୍ଷାତ କରିବାକୁ ଏକ ପତ୍ର ପାଇଲେ । ଗୋପବନ୍ଧୁ ଜିଲ୍ଲାରେ ଖଜଣାବନ୍ଦ ଆନ୍ଦୋଳନ କରିବେ ବୋଲି ଆଶଙ୍କା କରି ଡେପୁଟୀ କମିଶନର ତାଙ୍କ ଉପରେ 144 ଧାରା ଅନୁସାରେ ଏକ ନିଷେଧାଦେଶ ଜାରି କରିବାକୁ ଚାହୁଁଥିଲେ । ଗୋପବନ୍ଧୁ ନିର୍ଭୟରେ ତାଙ୍କ କୋଠିରେ ପହଞ୍ଚିଲେ । ଡେପୁଟୀ କମିଶନର ତାଙ୍କ ସଂଗେ ଆଲୋଚନା କରିବାରେ ବ୍ୟସ୍ତ ରହି ଆଦେଶ ଜାରି କରିବା ବିଷୟ ଭୁଲିଗଲେ । ତା'ପରେ ଗୋପବନ୍ଧୁ କହ୍ଲଣ ଗଲେ । ଆଦେଶ ଜାରି କରିବା କଥା ଡେପୁଟୀ କମିଶନର ମନେପକାଇବା ବେଳକୁ ଗୋପବନ୍ଧୁ ତିରିଶି ମାଇଲ ଦୂରକୁ ଚାଲି ଯାଇଥିଲେ ଏବଂ ବାଟରେ ସଭାରେ ଉଦ୍‌ବୋଧନ ଦେଇ ବିଦେଶୀ ବସ୍ତ୍ର ଦହନ କାର୍ଯ୍ୟ କରାଇ ଥିଲେ । ଶେଷରେ ସେ ସୋଣୁଆରେ ଥିବାବେଳେ ନିଷେଧାଦେଶ ପାଇଲେ ଓ ତତ୍‌କ୍ଷଣାତ୍ ନିଜ ନିର୍ଘଣ୍ଟ ସ୍ଥଗିତ ରଖିଲେ । ସେ ସିଂହଭୂମିରେ ଆଉ କିଛି କରି ପାରିବେ ନାହିଁ ବୋଲି ସେଠାରୁ ଆସି 1922 ମସିହା ଜାନୁଆରୀ 20 ତାରିଖ ଦିନ ଝାରସୁଗୁଡ଼ାରେ ପହଞ୍ଚିଲେ । ଜିଲ୍ଲାରେ ତାଙ୍କ ଉପସ୍ଥିତିର ସଦୁପଯୋଗ ଲାଗି ତାଙ୍କ ପାଇଁ ଝାରସୁଗୁଡ଼ା, ସମ୍ବଲପୁର ଓ ବରଗଡ଼ ଠାରେ ସଭା ଆୟୋଜିତ

ହୋଇଥିଲା, କିନ୍ତୁ ସମ୍ବଲପୁରର ଡେପୁଟୀ କମିଶନର ସିଂହଭୂମିର ଡେପୁଟୀ କମିଶନରଙ୍କ ଅପେକ୍ଷା ବେଶି ତତ୍ପରତା ଦେଖାଇ ଜିଲ୍ଲା ତମାମ କେବଳ 144 ଧାରା ଜାରି କରି ନ ଥିଲେ, ନିଜେ ଗୋପବନ୍ଧୁଙ୍କ ଉପରେ ଏକ ବ୍ୟକ୍ତିଗତ ନିଷେଧାଦେଶ ମଧ୍ୟ ଜାରି କଲେ। ସେ ସମ୍ବଲପୁର ଛାଡ଼ି ପୁରୀ ରମାନା ହେଲେ। କାଳେ ସେ ବାଲେଶ୍ୱରରେ ଓହ୍ଲାଇ ପଡ଼ିବେ, ଏହି ଆଶଙ୍କାରେ ସେଠାକାର ଜିଲ୍ଲା ମାଜିଷ୍ଟ୍ରେଟ ତାଙ୍କ ଉପରେ ରେଳଗାଡ଼ି ଭିତରେ ନିଷେଧାଦେଶ ଜାରି କରି ଆଦେଶ ଦେଲେ ଯେ, ସେ ବାଲେଶ୍ୱର ଷ୍ଟେସନ ପ୍ଲାଟଫର୍ମ ଉପରେ ପାଦ ପକାଇ ପାରିବେ ନାହିଁ। ଏହି ପରି ଭାବରେ ତାଙ୍କୁ ପ୍ରତ୍ୟେକ ଜିଲ୍ଲାରୁ ତଡ଼ି ଦିଆଗଲା। ସେ ପୁରୀ ସହରରେ ପହଞ୍ଚିବା କ୍ଷଣି ସେଠାର ଜିଲାମାଜିଷ୍ଟେଟ ତାଙ୍କ ପରେ ନିଷେଧାଦେଶ ଜାରି କରିଦେଲେ। ଏହି ସବୁ ନିଷେଧାଦେଶଗୁଡ଼ିକ ସତ୍ତ୍ୱେ ଗୋପବନ୍ଧୁ ନିର୍ଭୀକଭାବରେ କଂଗ୍ରେସ କମିଟି ଓ ଅନ୍ୟାନ୍ୟ ଅନୁଷ୍ଠାନଗୁଡ଼ିକର ସଭ୍ୟରୂପେ ନିଜ କର୍ତ୍ତବ୍ୟ କରି ଯାଉଥିଲେ ଓ କଂଗ୍ରେସ ଆଦର୍ଶ ପ୍ରଚାର କରିବାରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ।

**ବମ୍ବେରେ**

1922 ମସିହା ଫେବୃଆରୀ ମାସ ମଧ୍ୟ ଭାଗରେ ଗୋପବନ୍ଧୁ ଓ ଲିଙ୍ଗରାଜ ମିଶ୍ର ଓଡ଼ିଶାରେ ସାହାଯ୍ୟ କାର୍ଯ୍ୟ ପାଇଁ ଚାନ୍ଦା ଆଦାୟ କରିବା ଉଦ୍ଦେଶ୍ୟରେ ବମ୍ବେ ଯାଇ ହିନ୍ଦ୍ ସେବକ ସମାଜର ଅତିଥି ରୂପେ ରହିଥିଲେ। ସେମାନେ ବମ୍ବେରେ ଅପରିଚିତ ନ ଥିଲେ। ବମ୍ବେରୁ ପ୍ରକାଶିତ ସଂବାଦପତ୍ର ମାନଙ୍କରେ ଓଡ଼ିଶା ବିଷୟରେ, ବିଶେଷତଃ ସାକ୍ଷୀଗୋପାଳର ଅଭିନବ ଶିକ୍ଷାଗତ ପରୀକ୍ଷଣ ସଂବନ୍ଧରେ ବାରଂବାର ସଂବାଦ ପ୍ରକାଶିତ ହୋଇଥିଲା। ବମ୍ବେର ସ୍ଥାନୀୟ ଲୋକମାନେ ବନ ବିଦ୍ୟାଳୟ ବିଷୟରେ ଗୋପବନ୍ଧୁଙ୍କ ମୁହଁରୁ ଶୁଣିବା ଲାଗି ଉତ୍କଣ୍ଠା ପ୍ରକାଶ କରିବାରୁ ସେ ସେଠାରେ ଗୋଟିଏ ସାଧାରଣ ସଭାରେ ଭାଷଣ ଦେଇଥିଲେ। ସେହି ଭାଷଣ ପ୍ରସଙ୍ଗରେ ଗୋପବନ୍ଧୁ ଓଡ଼ିଶାର ପରିସ୍ଥିତି ସଂବନ୍ଧରେ ଗୋଟିଏ ନିଖୁଣ ଚିତ୍ର ଅଙ୍କନ କରି କିପରି ଓଡ଼ିଆମାନେ ନିକଟବର୍ତ୍ତୀ ଚାରି ଗୋଟି ପ୍ରଦେଶରେ ବିକ୍ଷିପ୍ତ ଭାବରେ ରହିବା ଫଳରେ ନିଜ ଶକ୍ତି ଓ ସଜୀବତା ହରାଇଛନ୍ତି ଏବଂ ନିଜର ଗୋଟିଏ ସ୍ୱତନ୍ତ୍ର ଶାସନ ନ ଥିବା ଫଳରେ ସେମାନେ କିପରି ବନ୍ୟା ଓ ଦୁର୍ଭିକ୍ଷର କବଳରେ ସତତ ପଡୁଛନ୍ତି, ତାହା ବିଶଦ ଭାବରେ ବର୍ଣ୍ଣନା କରି ଥିଲେ। ପୁଣି ସତ୍ୟବାଦୀର ଶିକ୍ଷାଗତ ପରୀକ୍ଷଣର ଉଦ୍ଦେଶ୍ୟ, ପ୍ରଣାଳୀ ଓ ଲକ୍ଷ୍ୟ ବିଷୟରେ କହି ଏହା କିପରି ଦରିଦ୍ର ଓଡ଼ିଆମାନଙ୍କ ଶିକ୍ଷାର ଆବଶ୍ୟକତା ପୂରଣ କରିଛି, ବୁଝାଇ ଦେଇଥିଲେ। ଗୋପବନ୍ଧୁ ଓ ତାଙ୍କ ସହକର୍ମୀମାନଙ୍କ ଏତାଦୃଶ କାର୍ଯ୍ୟକଳାପ ବିଷୟରେ ଜାଣି ବମ୍ବେର ଲୋକମାନେ ସହାନୁଭୂତି ଦେଖାଇବା ଓ ପ୍ରଶଂସା କରିବା ଫଳରେ ବ୍ୟବସାୟୀ ମହଲରୁ ଯଥେଷ୍ଟ ଚାନ୍ଦା ଅସୁଲ ହୋଇ ପାରିଥିଲା।

**ତାଙ୍କ ଗିରଫଦାରୀ**

ଓଡ଼ିଶାକୁ ଫେରି ଆସିବା ପରେ ସେ ଏକ ନୈରାଶ୍ୟ ଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ। ସତ୍ୟାଗ୍ରହର ବାର୍ତ୍ତା ଓଡ଼ିଶାର ଗଳି କନ୍ଦିରେ ପ୍ରବେଶ କରି

ପ୍ରଦେଶର ଅବହେଳିତ ଜନସାଧାରଣ, ବିଶେଷତଃ ଶୋଷିତ ଚାଷୀଙ୍କ ହୃଦୟରେ ଆତ୍ମ ପ୍ରତ୍ୟୟ ସୃଷ୍ଟି କରିଥିଲା। କନିକାର ପରିସ୍ଥିତି ସଂକଟଜନକ ହୋଇ ଉଠିଥିଲା। ଭୀଷଣ ଦମନ ମୂଳକ ବ୍ୟବସ୍ଥା, ଅସଂଖ୍ୟ ଗିରଫଦାରୀ ଓ ଫୌଜଦାରୀ ଦଣ୍ଡବିଧି ଆଇନର 144 ଧାରା ଅନୁସାରେ ନିଷେଧାଦେଶ ସତ୍ତ୍ୱେ କନିକାର ବାସିନ୍ଦାମାନେ ଦବି ଯାଇ ନ ଥିଲେ; କନିକାର ରାଜା ବାହାଦୂର ଓ ତାଙ୍କ କର୍ମଚାରୀମାନଙ୍କ କର ଧାର୍ଯ୍ୟ ବ୍ୟବସ୍ଥା ଓ ଦମନ ବିରୁଦ୍ଧରେ ବିଦ୍ରୋହ ଚଳାଇ ଥିଲେ। ରାଜା ଲୋକମାନଙ୍କ ପାଖକୁ ଯାଇ ସେମାନଙ୍କୁ ଶାନ୍ତ କରିଥିଲେ ଓ ସେମାନଙ୍କ ଅଭିଯୋଗର ପ୍ରତିକାର କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ରାଜସ୍ୱ ଆଦାୟ ବନ୍ଦ ନ କରିବା ଲାଗି ସେ ଲୋକମାନଙ୍କୁ ପ୍ରବର୍ତ୍ତାଇ ଥିଲେ। ଲୋକମାନେ ଏତେଦୂର ଉତ୍ତ୍ୟକ୍ତ ହୋଇଥିଲେ ଯେ କୌଣସି ପ୍ରକାର ପ୍ରବୋଧନା ଫଳପ୍ରଦ ହୋଇ ନ ଥିଲା ଓ ସେମାନେ ରାଜସ୍ୱ ଦେବା ବନ୍ଦ କରି ଦେଇଥିଲେ। ରାଜା ବାହାଦୂର ମଧ୍ୟ ଅନମନୀୟ ଥିଲେ। ସେ ଲୋକମାନଙ୍କ ଉପରେ ଗୁଳି ଚାଳନା କରିବାରୁ କେତେ ଜଣ ଲୋକ ଘଟଣା ସ୍ଥଳରେ ନିହତ ହୋଇଥିଲେ। ଶହ ଶହ ଲୋକ ଗିରଫ ହେଲେ, ବହୁ ସଂଖ୍ୟକ ବ୍ୟକ୍ତି ଆହତ ହେଲେ। ସେମାନଙ୍କ ପରିବାରର ସ୍ତ୍ରୀଲୋକମାନେ ନିର୍ଯ୍ୟାତିତା ହେଲେ, ସେମାନଙ୍କ ସଂପତ୍ତି ଲୁଣ୍ଠିତ ହେଲା ଓ ସେମାନଙ୍କ ଘର ପୋଡ଼ି ଦିଆଗଲା। ତେବେ ବି ଲୋକମାନେ ଦୁର୍ବଳ ହୋଇଯାଇ ନ ଥିଲେ। ଏହି ଗଣ୍ଡଗୋଳ ପାଇଁ କଂଗ୍ରେସ କର୍ମୀମାନଙ୍କୁ ଦାୟୀ କରାଗଲା ଓ ସେମାନଙ୍କ ଉପରେ ନିଷେଧାଦେଶ ଜାରି ହେଲା। 'ସମାଜ' ସ୍ତମ୍ଭରେ କନିକାର ଦମନ ଲୀଳା ସଂବନ୍ଧରେ ଲୋମହର୍ଷଣକାରୀ ବିବରଣୀ ପ୍ରକାଶିତ ହେବା ଫଳରେ ରାଜା ବାହାଦୂର ଏହାର ସଂପାଦକ ଗୋପବନ୍ଧୁଙ୍କ ବିରୁଦ୍ଧରେ ଉତ୍ତ୍ୟକ୍ତ ହୋଇ ଉଠିଲେ। ସେ ସଂପାଦକଙ୍କ ବିରୁଦ୍ଧରେ କେତେ ଗୋଟି ମାନହାନୀ ମୋକଦ୍ଦମା ଦାଏର କଲେ। ଏହି ସବୁ ପଦକ୍ଷେପ ଗୋପବନ୍ଧୁଙ୍କୁ ଦବାଇ ପାରିଲା ନାହିଁ। ସେ ପ୍ରାଦେଶିକ କଂଗ୍ରେସ କମିଟିର ଗୋଟିଏ ବୈଠକରେ ଯୋଗ ଦେବା ଲାଗି ବାଲେଶ୍ୱର ଯାଇଥିଲେ। ପ୍ରଜାମାନେ ରାଜା ବାହାଦୂରଙ୍କ ବିରୁଦ୍ଧରେ କରି ଥିବା ଅଭିଯୋଗ ସମ୍ବନ୍ଧରେ ଅନୁସନ୍ଧାନ କରିବା ଲାଗି ଗୋଟିଏ କମିଟି ନିଯୁକ୍ତ ହେଲା ଏବଂ ଏ ସଂକ୍ରାନ୍ତରେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ରୂପେ ନିଜେ ଗୋପବନ୍ଧୁ ଓ ସଂପାଦକ ଭଦ୍ରକ ଗଲେ। ଗୋପବନ୍ଧୁଙ୍କ ଉପରେ ଗୋଟିଏ ମୁଖବନ୍ଦ ଆଦେଶ ଜାରି ହେଲା ଓ ଅନୁବିଭାଗ ଭିତରେ କୌଣସି ସଭାରେ ଭାଷଣ ନ ଦେବା ଲାଗି ତାଙ୍କୁ ଆଦେଶ ଦିଆଗଲା। ଏହି ସାମାନ୍ୟ କଥାରେ ଗୋପବନ୍ଧୁ କର୍ତ୍ତୃପକ୍ଷଙ୍କ ସହିତ ମୁକାବିଲା କରିବା ଲାଗି ଚାହିଁଲେ ନାହିଁ; ତେଣୁ ଭଦ୍ରକ ଅନୁବିଭାଗୀୟ ରାଜନୈତିକ ସମ୍ମିଳନୀରେ ଉଦବୋଧନ ଦେଇ ସାରି ଦୁଇ ଦିନ ପାଇଁ ସେ ଜଳେଶ୍ୱର ଗଲେ ଓ ଶେଷରେ ସତ୍ୟବାଦୀକୁ ଫେରି ବିଶ୍ରାମ ନେଲେ। ସତ୍ୟବାଦୀକୁ ଫେରିବା ବାଟରେ ସେ ବେମାର ହୋଇ ପଡ଼ିଥିଲେ ହେଁ ଜିଲ୍ଲାରୁ ବହିଷ୍କାର କରି ଜିଲ୍ଲା ମାଜିଷ୍ଟ୍ରେଟ ଉପରେ ଫୌଜଦାରୀ ଦଣ୍ଡବିଧି ଆଇନର

144 ଦଫାରେ ଆଉ ଗୋଟିଏ ହୁକୁମ ଜାରି କଲେ। ସତ୍ୟବାଦୀରୁ ଗୋପବନ୍ଧୁ ପୁରୀ ଗଲେ। ପୁରୀରେ ଅବସ୍ଥାନ କରୁଥିବା ବେଳେ ସେ ଭଦ୍ରକ ଏସ. ଡି. ଓଙ୍କ ଠାରୁ ଗୋଟିଏ ସମନ ପାଇଲେ ଯେ ସେ ଭଦ୍ରକରେ ନିଷେଧାଦେଶ ଲଂଘନ କରି ଥିବାରୁ ତାଙ୍କ ବିରୁଦ୍ଧରେ ଗୋଟିଏ ମୋକଦ୍ଦମା ରୁଜୁ ହୋଇଛି। ତାର ଦୁଇ ଦିନ ପରେ ପୁରୀରେ ଦିନେ ସକାଳେ ସେ ଗାଧୋଇ ସାରି ଆସୁଥିବା ବେଳେ ପୋଲିସ ଇନ୍‌ସ୍ପେକ୍ଟର ତାଙ୍କୁ ଭେଟି କଟକରେ ସେ ଗୋଟିଏ ସ୍ୱରାଜ ସ୍ୱେଚ୍ଛାସେବକ ବାହିନୀ ଗଠନ କରି ଥିବାରୁ ସେଠାକାର ଜିଲ୍ଲା ମାଜିଷ୍ଟ୍ରେଟ ଫୌଜଦାରୀ ସଂଶୋଧନ ଆଇନର 17 ଧାରା ଅନୁସାରେ ତାଙ୍କୁ ଗିରଫ କରିବା ଲାଗି ୱାରେଣ୍ଟ ପଠାଇ ଥିବାର ଦେଖାଇଲେ। ୱାରେଣ୍ଟ ଉପରେ ଆଖି ପକାଇ ଗୋପବନ୍ଧୁ କହି ଉଠିଲେ, ‘‘ଓ, ଆପଣ ତାହା ହେଲେ ଶେଷରେ ଆସିଲେ ! ମୁଁ ଏହାକୁ ବହୁ ଦିନୁ ଅପେକ୍ଷା କରୁଥିଲି।’’

**କଟକ ଓ ହଜାରୀବାଗ ଜେଲରେ**

ଫୌଜଦାରୀ ସଂଶୋଧନ ଆଇନ ଅନୁସାରେ ଗୋପବନ୍ଧୁଙ୍କ ବିଚାର କଟକ ଠାରେ 1922 ମସିହା 26 ତାରିଖରେ ହୋଇଥିଲା। ଭଦ୍ରକରେ ନିଷେଧାଦେଶ ଲଂଘନ କରି ଥିବାରୁ ଆହୁରି ଗୋଟିଏ ମୋକଦ୍ଦମା ଚାଲି ଥିଲା। ପ୍ରଥମ ମୋକଦ୍ଦମାରେ ତାଙ୍କୁ ଦୁଇ ବର୍ଷ ଅଶ୍ରମ କାରାଦଣ୍ଡ ଓ ଦ୍ୱିତୀୟ ମୋକଦ୍ଦମାରେ ଛଅ ମାସ ଅଶ୍ରମ କାରାଦଣ୍ଡ ହୋଇଥିଲା। ବିଚାର କରିଥିବା ମାଜିଷ୍ଟ୍ରେଟ ରାୟରେ ଲେଖିଥିଲେ ଯେ ଉଭୟ ଦଣ୍ଡ ସେ ଏକା ବେଳକେ ଭୋଗ କରିବେ; ତେଣୁ ତାଙ୍କୁ ମୋଟ ଦୁଇ ବର୍ଷ କାରାଦଣ୍ଡ ଭୋଗ କରିବାକୁ ପଡ଼ିବ। ତାଙ୍କୁ କଟକ ଜେଲରେ ରଖା ହେଲା। ରାଜନୈତିକ ଜୀବନର ପ୍ରାକ୍‌କାଳରୁ ଗୋପବନ୍ଧୁ କନିକା ବ୍ୟାପାରରେ ଆଗ୍ରହ ଦେଖାଇ ଥିଲେ। କନିକାର ରାଜା ବାହାଦୁର ଜଣେ ଶୋଷକ ଜମିଦାର ଥିଲେ ଓ ନିଜ ଜମିଦାରୀର ପ୍ରଜାମାନଙ୍କ ଉପରେ ସେ ଅସଂଖ୍ୟ କର ବସାଇ ଥିଲେ । କୁହାଯାଏ ଯେ ସେ 64 ପ୍ରକାର କର ଧାର୍ଯ୍ୟ କରିଥିଲେ ଓ ପ୍ରଜାମାନେ କର ନ ଦେଇ କୌଣସି ଗୋଟିଏ ପଦାର୍ଥ ପାଉ ନ ଥିଲେ। ଏହା ଲୋକମାନଙ୍କ ପକ୍ଷରେ ଅସହ୍ୟ ଥିଲା ଏବଂ ସେମାନେ ଏହି ବେଆଇନ କର ଗୁଡ଼ିକ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରୁ କଟକର ତତ୍କାଳୀନ ପୋଲିସ ସାହେବ ଦେୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କ ସାହାଯ୍ୟରେ ରାଜା ବାହାଦୁର ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ। ସେ କାଳର ଦୁଇଟି ସଂବାଦପତ୍ର, ‘ସମାଜ’ ଓ ‘ଉତ୍କଳଦୀପିକା’ ରାଜାଙ୍କ ଦମନ ମୂଳକ କାର୍ଯ୍ୟକଳାପ ଓ ପୋଲିସ୍‌ର ମାତ୍ରାଧିକ ବଳପ୍ରୟୋଗ ବିରୁଦ୍ଧରେ ଟିପ୍ପଣୀ ଲେଖି କନିକା ବ୍ୟାପାର ସଂବନ୍ଧରେ ପୃଷ୍ଠା ପୃଷ୍ଠା କରି ଲୋମହର୍ଷଣକାରୀ ବିବରଣୀ ଛପାଇ ଥିଲେ। ଏପରି କି ଗୋପବନ୍ଧୁଙ୍କୁ ଜେଲକୁ ନିଆଯାଉଥିବା ବେଳେ ସେ ଏହି ହତଭାଗ୍ୟ ଲୋକଙ୍କ କଥା ଭୁଲି ପାରି ନ ଥିଲେ। ଯେତେବେଳେ ତାଙ୍କ ସହକର୍ମୀ ନିରଞ୍ଜନ ପଟ୍ଟନାୟକ ତାଙ୍କ ଠାରୁ ଦେଶବାସୀଙ୍କ ପାଇଁ ଗୋଟିଏ ବିଦାୟ କାଳୀନ ବାର୍ତ୍ତା ମାଗିଲେ, ଗୋପବନ୍ଧୁ କହିଥିଲେ,‘‘କନିକା ପରିସ୍ଥିତି ଉପରେ ଗୋଟିଏ

ସ୍ୱାଧୀନ ଓ ନିରପେକ୍ଷ ଅନୁସନ୍ଧାନ ହେବା ଉଚିତ। ଏହା ଓଡ଼ିଆ ଲୋକମାନଙ୍କ ସର୍ବ ପ୍ରଥମ ସର୍ବ ପ୍ରଧାନ କର୍ତ୍ତବ୍ୟ। ଅନୁସନ୍ଧାନ କରିବା ଲାଗି କୌଣସି ଉଦ୍ୟମ ହେଲେ ଶାସକମାନେ ଆତଙ୍କିତ ହୋଇ ପଡ଼ନ୍ତି। ମୁଁ ମୋ ଲୋକମାନଙ୍କୁ ଏବଂ ବଙ୍ଗଳା ଓ ବିହାରର ଲୋକମାନଙ୍କୁ ନିବେଦନ କରୁଛି, ସେମାନେ ଆଉ କାଳ ବିଳମ୍ୱ ନ କରି କନିକା ବିଷୟରେ ଗୋଟିଏ ଅନୁସନ୍ଧାନ କରାନ୍ତୁ। ସେଠା ଲୋକେ ଆତଙ୍କିତ ଓ ନିରାଶ୍ରୟ ହୋଇ ପଡ଼ିଛନ୍ତି ବୋଲି ମୋର ଆଶଙ୍କା ହେଉଛି। ଏହି ଅନୁସନ୍ଧାନକୁ ବନ୍ଦ କରାଇବା ଲାଗି ମୋତେ ଗିରଫ କରା ଯାଇଛି। ତେଣୁ ନିରଞ୍ଜନ ବାବୁ, ମୁଁ ଆପଣଙ୍କୁ ଓ ଆପଣଙ୍କ ଜରିଆରେ ଓଡ଼ିଶାବାସୀଙ୍କୁ ନିବେଦନ ଜଣାଉଛି, ସେମାନେ କନିକାର ମୁଖା ଖୋଲି ଦିଅନ୍ତୁ ଓ ଗୋଟିଏ ଅନୁସନ୍ଧାନ ଦାବୀ କରନ୍ତୁ।''

ଗୋପବନ୍ଧୁଙ୍କ ବିରୁଦ୍ଧରେ ଚାଲିଥିବା ଉପଯୁକ୍ତ ଦୁଇଟି ମୋକଦ୍ଦମା ବ୍ୟତୀତ 'ସମାଜ'ରେ କନିକା ବିଷୟରେ ସଂବାଦ ଓ ମତାମତ ପ୍ରକାଶିତ ହୋଇଥିବାରୁ ଦେଓ୍ୱାନ ବାହାଦୂର ଶ୍ରୀ କୃଷ୍ଣ ମହାପାତ୍ର ତାଙ୍କ ବିରୁଦ୍ଧରେ ଗୋଟିଏ ମାନହାନୀ ମୋକଦ୍ଦମା ଦାଏର କରିଥିଲେ। ରାଜା ବାହାଦୂରଙ୍କ ଅପକର୍ମ ଓ ପୋଲିସ୍‌ର ମାତ୍ରାଧିକତାକୁ ପଦାରେ ପକାଇ ଦେବା ଲାଗି ଗୋପବନ୍ଧୁ ନ୍ୟାୟିକ ମଞ୍ଚକୁ ବ୍ୟବହାର କରିବା ବିଷୟରେ ଦୃଢ଼ପ୍ରତିଜ୍ଞ ଥିଲେ। ପୋଲିସ୍ କର୍ତ୍ତୃପକ୍ଷ ଯେତେବେଳେ ଜାଣି ପାରିଲେ ଯେ ସଂବାଦପତ୍ରରେ ଯାହା ପ୍ରକାଶିତ ହୋଇଛି, ତାହା ଅପେକ୍ଷା ବେଶି ତଥ୍ୟ ଅଦାଲତରେ ପ୍ରକାଶିତ ହୋଇ ପୋଲିସ୍‌ର ଅନିଷ୍ଟ କରିବ, ସେମାନେ ଭୟରେ ମୋକଦ୍ଦମାଟିକୁ ଉଠାଇ ନେଇଗଲେ। କେବଳ ଏହି ମୋକଦ୍ଦମା ବିଚାର ପାଇଁ ଗୋପବନ୍ଧୁଙ୍କୁ କଟକ ଜେଲରେ ରଖା ଯାଇଥିଲା; ମୋକଦ୍ଦମାଟି ଉଠାଇ ନିଆଯିବାରୁ 1923 ଜାନୁଆରୀ 24 ତାରିଖ ଦିନ ତାଙ୍କୁ ହଜାରୀବାଗ କେନ୍ଦ୍ର ଜେଲକୁ ପଠାଇ ଦିଆଗଲା। ସେ ଯାହାହେଉ ଗୋପବନ୍ଧୁ ଏବଂ ତାଙ୍କ ସହିତ ଅଭିଯୁକ୍ତ ଅନ୍ୟ ଦୁଇ ନେତା, ଡକ୍ଟର ଅଟଳ ବିହାରୀ ଆଚାର୍ଯ୍ୟ ଓ ସନ୍ଥ ଚରଣ ବେହେରା ମୋକଦ୍ଦମାଟିକୁ ଉଠାଇ ନେବା ଲାଗି ପୋଲିସ୍‌କୁ ଅନୁମତି ଦେଇ ଥିବାରୁ ମାଜିଷ୍ଟ୍ରେଟଙ୍କ ପାଖରେ ପ୍ରତିବାଦ କରିଥିଲେ।

ଗୋପବନ୍ଧୁ ଅତି ଦରକାରୀ କାମ କରି ତାଙ୍କ କାରାଗାର ଜୀବନ କଟାଇ ଥିଲେ। ତାଙ୍କ ସହିତ ଭାରତର ବହୁ ବିଖ୍ୟାତ ବ୍ୟକ୍ତି ଉକ୍ତ ଜେଲରେ ଥିଲେ। ସେମାନଙ୍କ ମଧ୍ୟରୁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଭାରତୀ କୃଷ୍ଣ ତୀର୍ଥ ସ୍ୱାମୀ ସବୁଠାରୁ ବେଶି ଗୋପବନ୍ଧୁଙ୍କୁ ସାହାଯ୍ୟ କରିଥିଲେ। ସ୍ୱାମୀଜୀଙ୍କ ସାହାଯ୍ୟ ନେଇ ଗୋପବନ୍ଧୁ ମହାଭାରତ ଓ ଶ୍ରୀମଦ୍ ଭଗବତ୍ ଗୀତା ଭଳି ଧର୍ମ ପୁସ୍ତକ ସଂସ୍କୃତ ଭାଷାରେ ଅଧ୍ୟୟନ କରିଥିଲେ। ସେ ମଧ୍ୟ କେତେ ଖଣ୍ଡ ପୁସ୍ତକ ରଚନା କରିଥିଲେ। ଭାରତ ପକ୍ଷରେ ଏହା ଗୋଟିଏ ବିଡ଼ମ୍ୱନାର ବିଷୟ ଯେ ଭାରତୀୟ ସାହିତ୍ୟର ବହୁ ମୂଲ୍ୟବାନ୍ ଗ୍ରନ୍ଥ ରଚୟିତାମାନଙ୍କ କାରାବାସ ବେଳେ ପ୍ରଣୀତ ହୋଇଛି। ଏପରିକି ଜବାହରଲାଲ' ନେହେରୁ ଜେଲ ବାହାରେ ବହୁ କାର୍ଯ୍ୟ ବ୍ୟସ୍ତ ରହୁଥିଲେ ବୋଲି ସେ ଜେଲରେ ଥାଇ ତାଙ୍କ ଆତ୍ମଜୀବନୀ Glimpses of World Histroy ଓ Discovery

of India ଭଳି ବିଖ୍ୟାତ ପୁସ୍ତକଗୁଡ଼ିକ ରଚନା କରିଥିଲେ। ଜେଲ ବାହାରେ ଗୋପବନ୍ଧୁ ମଧ୍ୟ କମ କାର୍ଯ୍ୟ-ବ୍ୟସ୍ତ ରହୁ ନ ଥିଲେ; ତେଣୁ ସେ ତାଙ୍କ କାରାବାସକୁ ଅଧ୍ୟୟନ ଓ ରଚନା କାର୍ଯ୍ୟରେ ବିନିଯୋଗ କରିଥିଲେ। ତାଙ୍କ ରଚନା ମଧ୍ୟରେ ବନ୍ଦୀର ଆତ୍ମକଥା, ଧର୍ମପଦ, ଗୋ ମାହାତ୍ମ୍ୟ, ନଚିକେତା ଉପାଖ୍ୟାନ ଓ କାରା କବିତା ହଜାରୀବାଗ ଜେଲରେ ଥିବା ବେଳେ ରଚିତ ହୋଇଥିଲା। ସେ ମଧ୍ୟ ଅନ୍ୟ ସହବନ୍ଦୀ ତଥା ଜେଲର କର୍ମଚାରୀ ମାନଙ୍କ ପ୍ରତି ଅମନୋଯୋଗୀ ନ ଥିଲେ। ତାଙ୍କ କାରାଗାର ଜୀବନ ସେମାନଙ୍କୁ ଏତେ ଦୂର ମୁଗ୍ଧ କରିଥିଲା ଯେ ସେମାନେ ଗୋପବନ୍ଧୁଙ୍କ ପ୍ରଭାବ ଯୋଗୁ ନିଜ ଚରିତ୍ରକୁ ସଂଶୋଧନ କରିଥିଲେ। ସେ ସର୍ବଦା ଧ୍ୟାନ ମଗ୍ନ ରହୁଥିଲେ ଓ ପ୍ରତି ବୁଧବାର ଦିନ ମୌନବ୍ରତ ଅବଲମ୍ବନ କରୁଥିଲେ। ମହାତ୍ମା ଗାନ୍ଧି ସୋମବାର ଦିନ ନୀରବ ରହୁଥିଲେ ଓ ଜୀବନ ସାରା ଏହି ଅଭ୍ୟାସ ଛାଡ଼ି ନ ଥିଲେ। ସେହିପରି ଗୋପବନ୍ଧୁ ଜେଲ୍ ବାହାରେ ମଧ୍ୟ ବୁଧବାର ଦିନଟି ମୌନ ରହୁଥିଲେ। ସେ ଦିନଟିକୁ ସେ ଲେଖା ପଢ଼ା ଓ ଧ୍ୟାନରେ କଟାଉ ଥିଲେ।

ସେ 1924 ମସିହା ଜୁନ 24 ତାରିଖ ଦିନ ହଜାରୀବାଗ ଜେଲରୁ ଖଲାସ ହୋଇଥିଲେ।

ତାଙ୍କ ଜେଲମୁକ୍ତି ବେଳେ ବଙ୍ଗଳାର ଦେଶ-ପ୍ରେମୀ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ କଟକ ଠାରେ ଓଡ଼ିଶା ପ୍ରାଦେଶିକ ରାଜନୈତିକ ସମ୍ମିଳନୀ ଅନୁଷ୍ଠିତ ହେଉଥିଲା। ଗୋପବନ୍ଧୁ ସମ୍ମିଳନୀରେ ପହଞ୍ଚିବା ମାତ୍ରକେ ସମବେତ ଦେଶବାସୀମାନଙ୍କ ମଧ୍ୟରେ ଆନନ୍ଦର ଢେଉ ଖେଳିଗଲା। ଗୋପବନ୍ଧୁଙ୍କ ଗୌରବମୟ କାର୍ଯ୍ୟ କଳାପ ସଂବନ୍ଧରେ ଅବଗତ ହୋଇ ଓ ତାଙ୍କ ପ୍ରତି ଲୋକମାନଙ୍କ ଶ୍ରଦ୍ଧା ଦେଖି ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ତାଙ୍କୁ 'ଉତ୍କଳମଣି' ଉପାଧିରେ ବିଭୂଷିତ କରିଥିଲେ। ଏହି ନାମରେ ସେ ସର୍ବଜନ ବିଦିତ ହୋଇଛନ୍ତି।

**ସତ୍ୟବାଦୀ ବିଦ୍ୟାଳୟ ବନ୍ଦ ହୋଇଗଲା**

ଆଗରୁ କୁହାଯାଇଛି ଯେ କେବଳ ଗୋଟିଏ ହାଇସ୍କୁଲ ଖୋଲିବେ ବୋଲି ଗୋପବନ୍ଧୁ ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା କରି ନ ଥିଲେ। ଶିକ୍ଷା କ୍ଷେତ୍ରରେ ଏହା ଗୋଟିଏ ନୂଆ ପରୀକ୍ଷଣ ଥିଲା ଓ ଯେ କୌଣସି କାରଣରୁ ହେଉ ନା କାହିଁକି ସେ ତାଙ୍କ ଆଦର୍ଶବାଦ ତ୍ୟାଗ କରିବାକୁ ରାଜି ନ ଥିଲେ। ଏପରି କି ସରକାରୀ ନିୟମାବଳୀର କଟକଣାକୁ ଏଡ଼ିବା ଉଦ୍ଦେଶ୍ୟରେ ସେ ସରକାରୀ ସାହାଯ୍ୟ ଗ୍ରହଣ କରି ନ ଥିଲେ ଏବଂ ଏଣୁ ତେଣୁ ସଂଗ୍ରହ କରୁଥିବା ଚାନ୍ଦାରେ ସ୍କୁଲଟିକୁ ଚଳାଉ ଥିଲେ। 1913 ସୁଦ୍ଧା ସ୍କୁଲ ଉନ୍ନତିର ଶୀର୍ଷ ସ୍ଥାନରେ ପହଞ୍ଚି ଥିଲା, କିନ୍ତୁ ସେ ରାଜନୈତିକ କାର୍ଯ୍ୟକଳାପ ଆରମ୍ଭ କରିବା ମାତ୍ରକେ ବିଦ୍ୟାଳୟଟିକୁ ନିଜ ରାଜନୈତିକ ଆନ୍ଦୋଳନ ସହିତ ଯୋଡ଼ି ଦେଇଥିଲେ। ଏହି ବିଦ୍ୟାଳୟ ପ୍ରତିଷ୍ଠାର ପୃଷ୍ଠଭୂମିରେ ତାଙ୍କର ଦୃଢ଼ ଆଦର୍ଶବାଦ ଥିଲା ବୋଲି ୧୨୧୪ ମସିହାରେ ପ୍ରକାଶିତ ସତ୍ୟବାଦୀ ସ୍କୁଲ ବିବରଣୀର "ଭବିଷ୍ୟତ" ଶୀର୍ଷକ ଅଧ୍ୟାୟରୁ ଜଣାପଡ଼େ। ସେ ଲେଖି ଥିଲେ,

"ସବୁ-ଦିନ ପାଇଁ କୌଣସି ଗୋଟିଏ ସଂକୀର୍ଣ୍ଣ ପରିବେଶ ମଧ୍ୟରେ ସୀମାବଦ୍ଧ ହୋଇ ରହି ଅନ୍ୟାନ୍ୟ ବିଦ୍ୟାଳୟ ପ୍ରତିଷ୍ଠା ପର୍ଯ୍ୟନ୍ତ ଅପେକ୍ଷା କରିବା ଏହି ଅନୁଷ୍ଠାନର ପ୍ରତିଷ୍ଠାତାମାନଙ୍କ ଉଦ୍ଦେଶ୍ୟ ବା ଲକ୍ଷ୍ୟ ନ ଥିଲା। "ଧନୀ ଓ ଦରିଦ୍ର ସମସ୍ତଙ୍କ ପାଇଁ ଶିକ୍ଷାର ଦ୍ୱାର ଉନ୍ମୁକ୍ତ ରହୁ" ଏହି ଆଦର୍ଶକୁ ଭିତ୍ତି କରି ସତ୍ୟବାଦୀ ସ୍କୁଲ ସ୍ଥାପିତ ହୋଇଥିଲା। ବର୍ତ୍ତମାନ ଏହି ବିଦ୍ୟାଳୟ ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ ହୋଇଛି, ତେଣୁ ପ୍ରତିଷ୍ଠାତାମାନଙ୍କୁ କଳ୍ପିତ ଶିକ୍ଷାଗତ ଆନ୍ଦୋଳନ ପାଇଁ ସେମାନଙ୍କ ପୂରା ସମୟ ଓ ଶକ୍ତି ବିନିଯୋଗ କରିବାକୁ ହେବ। ଏହା ଅବଶ୍ୟ ସତ୍ୟ ଯେ ଏବେ ବି ବିଦ୍ୟାଳୟର ବହୁ ଅଭାବ ଅସୁବିଧା ରହିଛି, କିନ୍ତୁ ସେମାନେ ଏହି ଗୋଟିଏ ସ୍କୁଲରେ ବାନ୍ଧି ହୋଇ ରହିଲେ ଓଡ଼ିଶାରେ ଶିକ୍ଷା ପ୍ରସାର କାର୍ଯ୍ୟ ବାଧା ପାଇବ। ଏହି ଅନୁଷ୍ଠାନର ଛାଞ୍ଚରେ ଆହୁରି ଅନେକ ଅନୁଷ୍ଠାନ ପ୍ରତିଷ୍ଠିତ ହେବା ଆବଶ୍ୟକ। ଗୋଟିକ ପରେ ଗୋଟିଏ ସ୍କୁଲ ସ୍ଥାପିତ ହୋଇ ନ ପାରିଲେ ଏହି ଗୋଟିଏ ସ୍କୁଲର ଆବଶ୍ୟକତା ବା କେତେ ? ତେଣୁ ଆଶା କରାଯାଏ ଯେ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କ ପରି ଆହୁରି ଅନେକ ସାହସୀ ଓ ସ୍ୱାର୍ଥତ୍ୟାଗୀ ଯୁବକ ଆଗେଇ ଆସି ଶିକ୍ଷକତାକୁ ନିଜ ଜୀବନର ବ୍ରତ ରୂପେ ବାଛି ନେଇ ଏହି ଗୌରବମୟ ଆନ୍ଦୋଳନରେ ଅଂଶ ଗ୍ରହଣ କରିବେ। ଏହି ସତ୍ୟବାଦୀ ସ୍କୁଲରେ ପଢ଼ି ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ବହୁ ଛାତ୍ର କଟକ କଲେଜରୁ ଆଇ.ଏ ଓ ବି.ଏ. ପରୀକ୍ଷାରେ କୃତକାର୍ଯ୍ୟ ହେବା ପରେ ଏହି ନୂଆ ସ୍କୁଲଗୁଡ଼ିକରେ ଶିକ୍ଷକତା କରିବେ। ଯେତେବେଳେ ଦଳ ଦଳ ହୋଇ ଏହି ଯୁବକମାନେ ନିଜ ଶିକ୍ଷକମାନଙ୍କ ସେବା ଓ ତ୍ୟାଗ ଭାବରେ ଅନୁପ୍ରାଣିତ ହୋଇ ନିଜ କଲେଜ ଶିକ୍ଷା ସମାପ୍ତ କରି ଶିକ୍ଷା ପ୍ରସାର ଉଦ୍ଦେଶ୍ୟରେ ଚାଲିଥିବା ଏହି ଆନ୍ଦୋଳନରେ ଭାଗ ନେବା ଲାଗି ଆଗେଇ ଆସିବେ, ସେତେବେଳେ ବହୁ ସଂଖ୍ୟକ ବିଦ୍ୟାଳୟ ପ୍ରତିଷ୍ଠା କରି ସେଗୁଡ଼ିକୁ ଚଳଣା ଖୁଣା କରାଇବା ଗୋପବନ୍ଧୁ ଓ ତାଙ୍କ ସହକର୍ମୀମାନଙ୍କ ପକ୍ଷରେ କଷ୍ଟ ସାଧ୍ୟ ହେବ ନାହିଁ।"

ଏଗୁଡ଼ିକ ବେଶ୍ ଉତ୍ସାହପ୍ରଦ ମନ୍ତବ୍ୟ ଏବଂ ଅନ୍ୟମାନେ ସେମାନଙ୍କ ଉଦ୍ୟମ ବିଷୟରେ କ'ଣ ଭାବୁଛନ୍ତି, ତାହା ଜାଣି ପ୍ରତିଷ୍ଠାତାମାନେ ନିଶ୍ଚୟ ଖୁସୀ ହୋଇଥିବେ। ଗୋପବନ୍ଧୁ କିନ୍ତୁ ଏହି ଅନୁଷ୍ଠାନକୁ ଗୋଟିଏ ମାମୁଲି ସ୍କୁଲ ରୂପେ ବିଚାରୁ ନ ଥିଲେ; ସେ ଏହାକୁ ଜାତି ଗଠନ ଲାଗି ଗୋଟିଏ ଅସ୍ତ୍ର ରୂପେ ମଣୁଥିଲେ। ଗୋପବନ୍ଧୁ ନିଜ ଓକିଲାତି ଛାଡ଼ି ଏହି ଶିକ୍ଷାଗତ ପରୀକ୍ଷଣ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ କିନ୍ତୁ ଜାତୀୟ ମୁକ୍ତି ପାଇଁ ସର୍ବବିଧ ଶକ୍ତି ଉପଯୋଗ କରିବା ପାଇଁ ଆହ୍ୱାନ ଆସିବା ମାତ୍ରକେ ସେ ସତ୍ୟବାଦୀ ବନ ବିଦ୍ୟାଳୟକୁ ଗୋଟିଏ ସାଧାରଣ ଅନୁଷ୍ଠାନ ରୂପେ ରହିବାକୁ ଛାଡ଼ି ପାରି ନ ଥିଲେ। ଏହି ବିଦ୍ୟାଳୟଟି ପ୍ରତିଷ୍ଠିତ ହେବାର ଠିକ୍ ବାର ବର୍ଷ ପରେ 1921 ମସିହା ଜାନୁଆରୀ 22 ତାରିଖ ଦିନ ଗୋପବନ୍ଧୁ ଓ ତାଙ୍କ ସହକର୍ମୀବୃନ୍ଦ ସତ୍ୟବାଦୀ ସ୍କୁଲକୁ ଗୋଟିଏ ଜାତୀୟ ବିଦ୍ୟାଳୟରେ ପରିଣତ

କରି ଦେଲେ। ଏହା ସ୍ମରଣ କରାଯାଇ ପାରେ ଯେ ଏହି ସମୟରେ ପ୍ରତିଷ୍ଠିତ ହୋଇଥିବା ଗୁଜରାଟ ବିଦ୍ୟାପୀଠ ଓ କାଶୀ ବିଦ୍ୟାପୀଠ ଏବେ ବି ଭଲ ରୂପେ ଚାଲିଛି, କିନ୍ତୁ ଗୋପବନ୍ଧୁଙ୍କ ଜୀବନ ବ୍ୟାପୀ ସାଧନାର ଫଳ ଏହି ସତ୍ୟବାଦୀ ସ୍କୁଲଟି ଜାତୀୟ ବିଦ୍ୟାଳୟରେ ପରିଣତ ହୋଇ କାଳ-କ୍ରମେ ମଉଳି ଗଲା। ଗୋପବନ୍ଧୁ ଜଣେ ଏକଛତ୍ରବାଦୀ ମନୋବୃତ୍ତିର ଲୋକ ନ ଥିଲେ। ସେ ମନ ଓ ତାଲିମରେ ଜଣେ ପୂର୍ଣ୍ଣ ଗଣତନ୍ତ୍ରବାଦୀ ଥିଲେ। ଏହି ଅନୁଷ୍ଠାନକୁ ଜାତୀୟ ବିଦ୍ୟାଳୟରେ ପରିଣତ କରିବା ପୂର୍ବରୁ ସେ ସବୁ ଶିକ୍ଷକ, ଛାତ୍ର ଓ ଛାତ୍ରମାନଙ୍କ ଅଭିଭାବକ ମାନଙ୍କ ମତ ଲୋଡ଼ିଥିଲେ ଏବଂ ତାଙ୍କ ସୌଭାଗ୍ୟକୁ ସମସ୍ତେ ଏଥିରେ ଏକମତ ହୋଇଥିଲେ। ଏଥିରେ ତାଙ୍କ କଳ୍ପିତ ଯୋଜନାନୁସାରେ ଏକ ପ୍ରକାର ଜାତୀୟ ଶିକ୍ଷା ପଦ୍ଧତି ଅନୁସୃତ ହେଉ ଥିବାରୁ ସେଥିରେ କୌଣସି ମୌଳିକ ପରିବର୍ତ୍ତନ କରିବାର ଆବଶ୍ୟକତା ଉପୁଜିଲା ନାହିଁ। ବିଦ୍ୟାଳୟର ଶିକ୍ଷା ପଦ୍ଧତିରେ ବୃତ୍ତି ମୂଳକ ବ୍ୟବସ୍ଥା ଥିଲା ଏବଂ ଚରଖା ଓ ତନ୍ତ ସାହାଯ୍ୟରେ ସୂତାକଟା ଓ ଲୁଗାବୁଣା ଶିକ୍ଷା ଦିଆ ଯାଉଥିଲା। ଏହାର ଅର୍ଥ ହେଲା, କେହି ମୌଳିକ ଶିକ୍ଷା ବିଷୟରେ ଭାବିବା ପୂର୍ବରୁ ଗୋପବନ୍ଧୁ ବାସ୍ତବ କ୍ଷେତ୍ରରେ ଏହାକୁ ଚଳାଇ ସାରିଥିଲେ। ଏହି ଦୂରଦୃଷ୍ଟିକୁ ଲକ୍ଷ୍ୟ କରିବାର କଥା। ନିଃଶୁଳ୍କ ଜାତୀୟ ଶିକ୍ଷା ପ୍ରସାର କରିବା ଲାଗି ମହାତ୍ମାଜୀ ଆହ୍ୱାନ ଦେବା ମାତ୍ରକେ ଗୋପବନ୍ଧୁ ଛାତ୍ରଦେୟ ବେତନ ବ୍ୟବସ୍ଥା ଉଠାଇ ଦେଇଥିଲେ। ସେ ମଧ ଉତ୍କଳ ସ୍ୱରାଜ୍ୟ ଶିକ୍ଷା ପରିଷଦ ଗଠନ କରିଥିଲେ। ପ୍ରଦେଶର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ଜାତୀୟ ଶିକ୍ଷାନୁଷ୍ଠାନ ଗୁଡ଼ିକୁ ନିର୍ଦ୍ଦେଶ ଦେବା, ନିୟନ୍ତ୍ରଣ କରିବା ଓ ପରିଦର୍ଶନ କରିବା ଏହି ପରିଷଦର କର୍ତ୍ତବ୍ୟ ଓ କ୍ଷମତା ଥିଲା। ସତ୍ୟବାଦୀ ସ୍କୁଲ 1921ରେ ଗୋଟିଏ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା ଏବଂ ପରେ ଓଡ଼ିଶାର ବାଚସ୍ପତି ଆସନ ଅଳଙ୍କୃତ କରିଥିବା ନନ୍ଦ କିଶୋର ଦାସ କିଛି ଦିନ ପରେ ଏଠାରେ ଶିକ୍ଷକ ରୂପେ ଯୋଗ ଦେଇଥିଲେ।

ବିଦ୍ୟାଳୟଟି ଗୋଟିଏ ଜାତୀୟ ବିଦ୍ୟାପୀଠରେ ପରିଣତ ହୋଇଥିବା କଥା ସତ୍ୟ, କିନ୍ତୁ ଏହି ବ୍ୟବସ୍ଥା ପରେ ଛାତ୍ର ଓ ସେମାନଙ୍କ ଅଭିଭାବକମାନଙ୍କ ମନଃପୂତ ହୋଇ ନ ଥିଲା। କ୍ରମେ ଛାତ୍ରମାନେ ଏହି ଅନୁଷ୍ଠାନକୁ ଛାଡ଼ି ଚାଲିଗଲେ ଓ ଛାତ୍ର ଅଭାବରୁ ଏହା ବନ୍ଦ ହୋଇ ଯିବାର ଆଶଙ୍କା ହେଲା। ଏହି ସମୟରେ ଶିକ୍ଷକମାନେ ସ୍କୁଲଟିକୁ ବଞ୍ଚାଇ ରଖିବା ଉଦ୍ଦେଶ୍ୟରେ ଏହାକୁ ପୁନର୍ବାର ବିଶ୍ୱ ବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ କରିବାକୁ ପଦକ୍ଷେପ ନେଲେ। ସଂକଟ ବେଳେ ପ୍ରଲୋଭନର ଶିକାର ହେବା ଲାଗି ଦୃଢ଼ମନା ଗୋପବନ୍ଧୁ ପ୍ରସ୍ତୁତ ନ ଥିଲେ।

ପରବର୍ତ୍ତୀ କାଳରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଓ ଲୋକସଭାର ସଭ୍ୟ ହୋଇଥିବା ପଣ୍ଡିତ ଲିଙ୍ଗରାଜ ମିଶ୍ର ବିହାର ଓ ଓଡ଼ିଶାର ସଂସ୍କୃତ ବିଦ୍ୟାଳୟଗୁଡ଼ିକର ସହକାରୀ ତତ୍ତ୍ୱାବଧାରକ ଥିଲେ ଓ ସେଥିରୁ ଇସ୍ତଫା ଦେଇ ଆସି ଏହି ବିଦ୍ୟାଳୟରେ ଶିକ୍ଷକରୂପେ ଯୋଗ ଦେଇଥିଲେ। ଲିଙ୍ଗରାଜଙ୍କ କ୍ଷେତ୍ରରେ ଗୋପବନ୍ଧୁଙ୍କ ବାସ୍ତବ ଆଦର୍ଶର ପ୍ରମାଣ

ମିଳେ। ପଢ଼ିବା ବେଳେ ଲିଙ୍ଗରାଜଙ୍କୁ ସାର୍ବଜନୀନ ଶିକ୍ଷା ସଂଘ ଆର୍ଥିକ ସାହାଯ୍ୟ ଦେଉ ଥିବାରୁ ସେ ଏହି ବିଦ୍ୟାଳୟରେ ଶିକ୍ଷକତା କରିବା ପାଇଁ ନୈତିକ ଦୃଷ୍ଟିରୁ ବାଧ ଥିଲେ। ସେ ଜଣେ ଦରିଦ୍ର ସନ୍ତାନ ଥିବାରୁ ପାଠପଢ଼ା ସରିବା ମାତ୍ରକେ ସତ୍ୟବାଦୀରେ ଯୋଗ ଦେଇଥିଲେ ତାଙ୍କ ପିତାମାତାଙ୍କ ପକ୍ଷରେ କଷ୍ଟଦାୟକ ହୋଇଥାନ୍ତା। ଅଧ୍ୟୟନ ଶେଷ କରି ସେ ଗୋପବନ୍ଧୁଙ୍କ ପାଖରେ ପହଞ୍ଚିବାରୁ କିଛି କାଳ ସରକାରୀ ଚାକିରୀ କରି ପିତୃଋଣ ପରିଶୋଧ କରିବା ପରେ ସେ ସତ୍ୟବାଦୀ ବିଦ୍ୟାଳୟରେ ଯୋଗ ଦେଇ ପାରନ୍ତି ବୋଲି ନିର୍ଦ୍ଦେଶ ପାଇଲେ। ସେ ନୈତିକ ଦାୟର ଆକ୍ଷରିକ ବ୍ୟାଖ୍ୟା କରି ନିଜ ପରିବାର ପାଇଁ ଅସୁବିଧା ସୃଷ୍ଟି କରିବା ଅନୁଚିତ। ଅନ୍ୟ ଭାଷାରେ କହିଲେ, ନୈତିକ ଦାୟ ତୁଳନାରେ ପୈତୃକ ଦାୟକୁ ଗୁରୁତର ବିବେଚନା କରିବା ଲାଗି ଲିଙ୍ଗରାଜଙ୍କୁ ଗୋପବନ୍ଧୁ ପରାମର୍ଶ ଦେଇଥିଲେ କିନ୍ତୁ ସତ୍ୟବାଦୀ ବନ ବିଦ୍ୟାଳୟରେ ଯୋଗଦେବା ନିମିତ୍ତ ତାଙ୍କର ଉତ୍କଣ୍ଠା ଥିବାରୁ ଲିଙ୍ଗରାଜ କେତେ ବର୍ଷ ପାଇଁ ସରକାରୀ ଚାକିରୀ କରିବା ପରେ ସେଠାରୁ ଇସ୍ତଫା ଦେଇ ଆସି ଏହି ସ୍କୁଲରେ ଯୋଗ ଦେଇଥିଲେ।

ବିଦ୍ୟାଳୟର ଆର୍ଥିକ ଦୂରବସ୍ଥା ଦେଖି ପଣ୍ଡିତ ଲିଙ୍ଗରାଜ 1925 ରେ ପୁରୀ ଠାରେ ଗୋପବନ୍ଧୁଙ୍କୁ ଭେଟି ସ୍କୁଲଟିକୁ ଜାତୀୟ ବିଦ୍ୟାଳୟ ରୂପେ ରଖିବାର ବିଜ୍ଞତା ସଂବନ୍ଧରେ ସଂଦେହ ପ୍ରକାଶ କରିଥିଲେ। ଯେଉଁ ଲକ୍ଷ୍ୟରେ ଅନୁଷ୍ଠାନଟିକୁ ଜାତୀୟ ବିଦ୍ୟାଳୟରେ ପରିଣତ କରା ଯାଇଥିଲା, ତାହା ନିକଟରେ ଲାଭ ହେବାର ଆଶା ନ ଥିଲା। କେତେକାଳ ଧରି ତ୍ୟାଗ ଓ ଶ୍ରମ ବିନିମୟରେ ଗଢ଼ି ଉଠିଥିବା ଏହି ଅନୁଷ୍ଠାନଟି ଭାଙ୍ଗି ପଡୁଥିଲା। ଅନ୍ତତଃ ଚାଲୁ ରହିବା ଦୃଷ୍ଟିରୁ ସ୍କୁଲଟିକୁ ପୁଣିଥରେ ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ କରିବା ଉଚିତ ବୋଲି ସେ କହିଲେ। ଗୋପବନ୍ଧୁ କହିଲେ ଆହୁରି ଅନେକ ଲୋକ ସ୍କୁଲର ଦୂରବସ୍ଥା ଦେଖି ବିଚଳିତ ହୋଇଥିଲେ। ସେତେବେଳର ପରିସ୍ଥିତିରେ ଗୋଟିଏ ନୂତନ ବିଦ୍ୟାଳୟ ଚଳାଇ ପାରିବେ କି ନାହିଁ ବୋଲି ଗୋପବନ୍ଧୁ ଲିଙ୍ଗରାଜଙ୍କୁ ପଚାରିଲେ। ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠିତ ହେବା ବେଳେ ଏହା ଗୋଟିଏ ସାଧାରଣ ସ୍କୁଲ ହେଉ ବୋଲି ଉଦ୍ୟୋକ୍ତାମାନଙ୍କର ଇଚ୍ଛା ନ ଥିଲା। ଏହାର ସ୍ଥାପନ ବେଳେ ଏହାକୁ ଶିକ୍ଷା ପ୍ରସାର ଲାଗି ଗୋଟିଏ ବିରାଟ ଆନ୍ଦୋଳନର ଅଂଶ ରୂପେ ବିଚାର କରା ଯାଇଥିଲା। ଓଡ଼ିଆଭାଷାକୁ ରକ୍ଷା କରିବା, ଓଡ଼ିଆ ସାହିତ୍ୟର ବିକାଶ ଘଟାଇବା, ଦରିଦ୍ର ଓ ନିରକ୍ଷର ଜନତାକୁ ସାମାଜିକ ଜୀବନର ଉଚ୍ଚତର ସ୍ତରକୁ ଉଠାଇବା ଏବଂ ସର୍ବୋପରି ସ୍ୱାଧୀନତା ଲାଭ କରି ସମାଜ ସଂସ୍କାର ବିଧାନ କରିବା ବିଷୟରେ ଜନସାଧାରଣଙ୍କୁ ଦେଶ ପ୍ରୀତିରେ ଉଦ୍‌ବୁଦ୍ଧ କରିବା ଲାଗି ସେମାନେ ସତ୍ୟବାଦୀ ଓ ଅନ୍ୟାନ୍ୟ ସ୍ଥାନରେ ସ୍କୁଲ ବସାଇଥିଲେ। ସ୍ୱାଧୀନତା ସଂଗ୍ରାମ କ୍ଷେତ୍ରରେ କେତେକ ପ୍ରତିକୂଳ ପରିସ୍ଥିତି ସୃଷ୍ଟି ହେବାରୁ ଏହି ଅନୁଷ୍ଠାନ ଗୁଡ଼ିକ କ୍ରମେ ଲୋପ ହୋଇ ଯାଉଛନ୍ତି। ଗୋଟିଏ ଯୁଦ୍ଧକ୍ଷେତ୍ରରେ ଲଢୁଆ ସୈନ୍ୟ ବାହିନୀ ପ୍ରତିକୂଳ ପରିସ୍ଥିତି ଯୋଗୁଁ ପରାସ୍ତ ହେଲେ ସେମାନେ

ଏହାକୁ ପରାଜୟ ବୋଲି ବିଚାର ନ କରି ସୁବିଧା ଆସିଲେ ପୁଣି ଆଗେଇ ଯିବା ଲାଗି ଅପେକ୍ଷା କରନ୍ତି। ସେହି ପରି ଆୟାସସାଧ ପରିସ୍ଥିତିରେ ବି ସେମାନଙ୍କୁ ସୁବିଧା ପାଇଁ ଅପେକ୍ଷା କରିବାକୁ ହେବ। ସେମାନେ ଓଡ଼ିଶା ଓ ବିକ୍ଷିପ୍ତ ଓଡ଼ିଆଭାଷୀ ଅଞ୍ଚଳରେ ଶିକ୍ଷା ଓ ଓଡ଼ିଆ ଭାଷା ପ୍ରଚାର କରି ସେମାନଙ୍କ ହୃଦୟରେ ଜାତୀୟ ଶିକ୍ଷା ଲାଭ କରିବା ପାଇଁ ଉତ୍କଣ୍ଠାକୁ ଜିଆଇଁ ରଖିବାକୁ ପଡ଼ିବ। ରାଧାନାଥ ରଥ 1931 ରେ ଲେଖିଛନ୍ତି ଯେ ଏହି ସମୟରେ ଥରେ ଗୋପବନ୍ଧୁ ନୈରାଶ୍ୟରେ ଆଚାର୍ଯ୍ୟ ହରିହର ଦାଶଙ୍କ ଆଗରେ କାମ କରିବାକୁ କୌଣସି କର୍ମୀ ମିଳୁ ନ ଥିବାରୁ ସେମାନଙ୍କ ନିଷ୍ଠାର କିଛି ମୂଲ୍ୟ ଅଛି କି ବୋଲି ପଚାରି ଥିଲେ। ଯେଉଁମାନଙ୍କ ପାଇଁ ବିଦ୍ୟାଳୟଟି ସ୍ଥାପିତ ହୋଇଥିଲା, ସେମାନେ ପ୍ରଦେଶର ବିଭିନ୍ନ କୋଣରେ ମରି ଯାଉଛନ୍ତି, କେତେକ ମଧ୍ୟ ଅନାହାରରେ ମୃତ୍ୟୁ ମୁଖରେ ପଡ଼ୁଛନ୍ତି। ଶିକ୍ଷା ଓ ସଭ୍ୟତାକୁ ଗଢ଼ିବ କିଏ? ଯାଜପୁର ଓ କେନ୍ଦ୍ରାପଡ଼ାର ବନ୍ୟାର କ୍ଷୟକ୍ଷତି ବିଷୟ ମନେ ପକାଇ ସେ ଓଡ଼ିଶାର ଦୁର୍ଭାଗ୍ୟ ବିଷୟ ଭାବି ବିହ୍ୱଳ ହୋଇ ପଡ଼ିଥିଲେ। ସେମାନେ ଏହି ପରି ବନ୍ୟା ଓ ଦୁର୍ଭିକ୍ଷର ଦାଉରେ ସଢ଼ୁଥିବେ। ବହୁ ଛାତ୍ର, ଶିକ୍ଷକ ଓ ସାଧାରଣ ଲୋକ ସାହାଯ୍ୟ କାର୍ଯ୍ୟରେ ଲାଗିଛନ୍ତି; ଏ ଗୁଡ଼ିକ ନିରର୍ଥକ ମନେ ହେଉଛି। ଏହା ସମୁଦ୍ରକୁ ଶଙ୍ଖେ ପଣା ପରି।

ଏହା ହେଉଛି, ଚିତ୍ରର ଅପର ପାର୍ଶ୍ୱ। ମହାନ୍ ଲକ୍ଷ୍ୟ ଅପୂର୍ଣ୍ଣ ରହିବାରୁ ନୈରାଶ୍ୟ ଓ ବିନୟରେ ଗୋପବନ୍ଧୁ ଏପରି କହି ପକାଇଲେ। ଗୋଟିଏ ଶିକ୍ଷାଗତ ପରୀକ୍ଷଣ ବ୍ୟୟ ବହୁଳ ହୋଇ ଥିବାରୁ, ଏଥି ପାଇଁ ସାଧନ ଆବଶ୍ୟକ ଥିଲା। ବିଶ୍ୱ ବିଦ୍ୟାଳୟ ସହିତ ସ୍କୁଲଟିକୁ ପୁନର୍ବାର ସଂଶ୍ଳିଷ୍ଟ କରାଯାଇ ନ ପାରିବାରୁ ଛାତ୍ରମାନେ ସ୍କୁଲ ଛାଡ଼ି ଦେଲେ ଏବଂ 1926 ରେ ସ୍କୁଲଟି ଏକା ବେଳକେ ବନ୍ଦ ହୋଇଗଲା। ଏତିକି ବେଳେ ଗୋପବନ୍ଧୁଙ୍କର କେତେ ଜଣ ସହକର୍ମୀ ମଧ୍ୟ ତାଙ୍କୁ ଛାଡ଼ି ଚାଲିଗଲେ, ତଥାପି ସେ ହତାଶ ନ ହୋଇ ପାରଂପରିକ ହିନ୍ଦୁ ସଂସ୍କୃତ ବିଷୟରେ ଶିକ୍ଷା ଦେବା ଲାଗି ବିଦ୍ୟାଳୟଟିକୁ ପ୍ରାଚୀନ ଗୁରୁକୁଳ ପଦ୍ଧତିରେ ପୁନର୍ଗଠନ କରିଦେଲେ। ଏପରି ପରିସ୍ଥିତିକୁ ଲକ୍ଷ୍ୟ କରି ବିଖ୍ୟାତ ସି. ଏଫ୍. ଆଣ୍ଡ୍ରୁଜ 1926 ମସିହା ଅଗଷ୍ଟ ସାତ ତାରିଖ ଦିନ ଗୋଟିଏ ଚିଠିରେ ଗୋପବନ୍ଧୁଙ୍କୁ ସାନ୍ତ୍ୱନା ଦେଇ ଲେଖିଥିଲେ, "ସତ୍ୟବାଦୀ ସ୍କୁଲ ବନ୍ଦ ହୋଇ ଯିବାରେ ଆପଣ ଭୀଷଣ ମାନସିକ ଯନ୍ତ୍ରଣା ଅନୁଭବ କରୁଥିବେ ବୋଲି ମୁଁ ଜାଣି ପାରୁଛି, କାରଣ ଏହି ଅନୁଷ୍ଠାନ ପାଇଁ ଆପଣ ଜୀବନର ବଡ଼ ଭାଗଟିଏ ବିନିଯୋଗ କରିଛନ୍ତି। ପୁଣି ସେହି ବିଦ୍ୟାଳୟଟି ଗୋଟିଏ ସରକାରୀ ସାହାଯ୍ୟ ପ୍ରାପ୍ତ ଅନୁଷ୍ଠାନ ହୋଇଗଲେ ଆପଣଙ୍କୁ ଆହୁରି ବାଧିବ। ମୁଁ ଜାଣି ପାରୁଛି, ଆପଣ ଏହାକୁ ଗୋଟିଏ ସରକାରୀ ସାହାଯ୍ୟ ପ୍ରାପ୍ତ ଅନୁଷ୍ଠାନ କରିବା ପରିବର୍ତ୍ତେ ପୁରାପୁରି ବନ୍ଦ କରି ଦେବାକୁ ଶ୍ରେୟସ୍କର ମନେ କରିବେ। ଶାନ୍ତି ନିକେତନ ଓ ଗୁଜରାଟ ବିଦ୍ୟାପୀଠ ବ୍ୟତୀତ ଅନ୍ୟ ସବୁ ଜାତୀୟ ଅନୁଷ୍ଠାନଗୁଡ଼ିକ ଏପରି ଅବସ୍ଥାରେ ପଡ଼ିଛନ୍ତି। ଭାରତର ଦୁଇ ଜଣ ବିରାଟ ବ୍ୟକ୍ତି ଏହି ଅନୁଷ୍ଠାନ ଦୁଇଟି ପଛରେ ଥିବାରୁ ସେମାନେ କେବଳ ତିଷ୍ଠି ରହିଛନ୍ତି।"

ଓଡ଼ିଶାର ଦୁର୍ଭାଗ୍ୟ ଯେ ଯେଉଁ ସତ୍ୟବାଦୀ ବିଦ୍ୟାଳୟ ଏପରି ଗୌରବମୟ ପରଂପରା ପ୍ରତିଷ୍ଠା କରିଥିଲା ଓ ଦେଶ ସାରା ଖ୍ୟାତି ଲାଭ କରିଥିଲା, ତାହା ସ୍ୱାଧୀନତା ପାଇଁ ଜାତୀୟ ସଂଗ୍ରାମରେ ଜଡ଼ିତ ହୋଇ ପଡ଼ିବା ଯୋଗୁ ବନ୍ଦ ହୋଇଗଲା। ଓଡ଼ିଶାର ଏହି ମହାନ ତ୍ୟାଗ ଦେଶର ଅନ୍ୟ ଅଞ୍ଚଳରେ ଯଥେଷ୍ଟ ସ୍ୱୀକୃତି ଲାଭ କରିନାହିଁ। ଅନୁଷ୍ଠାନକୁ ଚଳାଇ ରଖିବା ଲାଗି ସେ ରାଜ୍ୟ ଭିତରୁ ଓ ବାହାରୁ ଚାନ୍ଦା ମାଗିଥିଲେ କିନ୍ତୁ ତାଙ୍କ ନିନ୍ଦୁକମାନେ ଏହାକୁ ଭିନ୍ନ ଦୃଷ୍ଟିରେ ଦେଖିଲେ ଏବଂ ସେମାନେ ଓ ତାଙ୍କ ସହକର୍ମୀମାନଙ୍କ ମଧ୍ୟରୁ ମଧ୍ୟ କେତେ ଜଣ ତାଙ୍କ ବିରୁଦ୍ଧରେ ଅଯଥା ଅଭିଯୋଗ କଲେ। ଏହା ସତ୍ତ୍ୱେ ସ୍କୁଲଟି ଚାଲୁ ରହିଥିଲେ ପ୍ରାଚୀନ ଓ ନୂତନ ଛାଞ୍ଚରେ ଆଲୋକ ଓ ଜ୍ଞାନ ପ୍ରସାର କରି ଓଡ଼ିଶା ଇତିହାସରେ ଜାଜ୍ୱଲ୍ୟମାନ ହୋଇ ରହିଥାନ୍ତା। ବିଦ୍ୟାଳୟର କୀର୍ତ୍ତି ଓ ଏହାର ଶେଷ ପରିଣତି ମହାତ୍ମା ଗାନ୍ଧିଙ୍କ ଦୃଷ୍ଟି ମଧ୍ୟ ଆକର୍ଷଣ କରିଥିଲା। ତେଣୁ ସେ ତାଙ୍କ ପତ୍ରିକା ୟଙ୍ଗ ଇଣ୍ଡିଆ (Young India.) ସ୍ତମ୍ଭରେ 1921 ଅପ୍ରେଲ 13 ତାରିଖରେ ଲେଖିଥିଲେ, ''ଓଡ଼ିଶାରେ ମଧ୍ୟ କର୍ମୀ ଅଛନ୍ତି। ବିଧାନ ପରିଷଦର ପୂର୍ବତନ ସଭ୍ୟ, ଜଣେ ପୂର୍ବତନ ଓକିଲ ଓ ଆଉ ଅନେକ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ପଣ୍ଡିତ ଗୋପବନ୍ଧୁ ଦାସ ଜଣେ ନିଃସ୍ୱାର୍ଥପର ନେତା। ସେ ଓ ତାଙ୍କ ସମର୍ଥକମାନେ ଭାତ ଓ ଡାଲି ଖାଇ ବଞ୍ଚନ୍ତି। ଆଜିକାଲି ସେମାନେ କ୍ୱଚିତ ଘିଅ ଖାଆନ୍ତି। ଅସହଯୋଗ ଆନ୍ଦୋଳନ ପରେ ଏହି କର୍ମୀମାନେ ନ୍ୟୂନତମ ପରିମାଣ ଏପରିକି ମାସକୁ ଦଶ ଟଙ୍କା ମାତ୍ର ନିଅନ୍ତି।

ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହେବାର କାରଣ ନାହିଁ ଯେ ଏପରି ନିଷ୍ଠାପର ଲୋକ ଥିଲେ, ବର୍ଷକ ଭିତରେ ସ୍ୱାଧୀନତା ଆସି ଯିବ ବୋଲି ମୋର ବିଶ୍ୱାସ। ପୁରୀର ଏ ପାଖରେ ପ୍ରାୟ ବାର ମାଇଲ ଦୂରରେ ଥିବା ସାକ୍ଷୀଗୋପାଳ ଠାରେ ପଣ୍ଡିତ ଗୋପବନ୍ଧୁ ଗୋଟିଏ ମୁକ୍ତ ବିଦ୍ୟାଳୟ ସ୍ଥାପନ କରିଥିଲେ। ଏହା ଗୋଟିଏ ବନ ବିଦ୍ୟାଳୟ। ଯେ କୌଣସି ଲୋକ ଏହାକୁ ଦେଖିବା ଉଚିତ। ସ୍କୁଲର ଛାତ୍ର ଓ ଶିକ୍ଷକମାନଙ୍କ ଗହଣରେ ମୁଁ ଗୋଟିଏ ଦିନ ଆନନ୍ଦରେ କଟାଇଛି। ଖୋଲା ପଡ଼ିଆରେ ଶିକ୍ଷା ଦେବା ବିଷୟରେ ଏହା ଗୋଟିଏ ଗୁରୁତର ପରୀକ୍ଷଣ। କେତେଜଣ ଛାତ୍ର ମଧ୍ୟ ପଢ଼ିଲିମାନ।''

ମଧୁସୂଦନ ଦାସ ଏହି ବିଦ୍ୟାଳୟର ଛାତ୍ରମାନଙ୍କୁ ଅଗ୍ନି ସ୍ଫୁଲିଙ୍ଗ କହିଥିଲେ ବୋଲି କେହି ଆଶ୍ଚର୍ଯ୍ୟାନ୍ୱିତ ହେବା ଦରକାର ନାହିଁ, ଏପରିକି ସାର୍ ଏଡୁଆର୍ଡ୍ ଗେଟ୍ ମଧ୍ୟ କହିଥିଲେ, ''ସତ୍ୟବାଦୀ ସ୍କୁଲର ପିଲାମାନେ ହେଉଛନ୍ତି ଜୀବନ୍ତ ବୋମା।''

# ପୁରୀ ଜିଲ୍ଲାରେ ସାହାଯ୍ୟ କାର୍ଯ୍ୟ

ରକ୍ଷଣ ଗୋପବନ୍ଧୁଙ୍କ ଜୀବନର ଏକ ଅପରିହାର୍ଯ୍ୟ ଅଙ୍ଗ ଥିଲା; ତେବେ ବି ଅନ୍ୟମାନଙ୍କ ଦୁଃଖ ଦେଖି ସେ ବିଚଳିତ ହୋଇ ପଡୁଥିଲେ। ସେ ସ୍ଥାୟୀ ଭାବରେ ପୁରୀ ସହରରେ ବସବାସ ଆରମ୍ଭ କରିବା ପରେ ବିହାର ଓ ଓଡ଼ିଶାର ଲାଟ 1926 ମସିହା ଅପ୍ରେଲ 22 ତାରିଖ ଦିନ ପୁରୀ ଆସିଥିଲେ ଏବଂ ତାଙ୍କୁ ଅଭ୍ୟର୍ଥନା କରିବା ଲାଗି ଏମାର ମଠର ମହନ୍ତ ମହାରାଜ ଗୋଟିଏ ବିରାଟ ଉଦ୍ୟାନ ଭୋଜି ଦେଇଥିଲେ। ଏହାର ଆନୁମାନିକ ବ୍ୟୟ ପ୍ରାୟ ଦଶ ହଜାର ଟଙ୍କା ଥିଲା। ଗୋଟିଏ ସାଧାରଣ ଅଭ୍ୟର୍ଥନା ପାଇଁ ଏତେ ଗୁଡ଼ିଏ ଟଙ୍କା ଖର୍ଚ୍ଚ ହେବା ବ୍ୟବସ୍ଥାକୁ ପୁରୀବାସୀମାନେ ପସନ୍ଦ କଲେ ନାହିଁ। କାରଣ ଏହି ଟଙ୍କା ମରୁଡ଼ି ଓ ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ ଦେବାରେ ବ୍ୟୟ କରାଯାଇ ପାରିଥାନ୍ତା। ତେଣୁ ସେ ଦିନ ସନ୍ଧ୍ୟାରେ ସିଂହଦ୍ୱାରରେ ଗୋଟିଏ ପ୍ରତିବାଦ ସଭା ହୋଇଥିଲା। ଏହି ସଭା ଯୋଗୁଁ ଶାନ୍ତି ଭଙ୍ଗ ଆଶଙ୍କା କରି ପୁରୀର ଜିଲା ମାଜିଷ୍ଟ୍ରେଟ ଗୋପବନ୍ଧୁଙ୍କ ଉପରେ ଫୌଜଦାରୀ କାର୍ଯ୍ୟବିଧି ଆଇନର 144 ଧାରା ଅନୁସାରେ ଗୋଟିଏ ମୁଖବନ୍ଧ ଆଦେଶ ଜାରି କରି ସଭାରେ ଭାଷଣ ନ ଦେବା ଲାଗି ତାଙ୍କୁ ନିର୍ଦ୍ଦେଶ ଦେଲେ। ଏହି ସାମାନ୍ୟ ଘଟଣାକୁ ବଡ଼ କରିବା ଲାଗି ଗୋପବନ୍ଧୁ ଚାହୁଁ ନ ଥିଲେ ବୋଲି ସେ ଉକ୍ତ ଆଦେଶକୁ ଲଂଘନ ନ କରିବାକୁ ସ୍ଥିର କଲେ। ଏହି ମହା ପୁରୁଷଙ୍କ ମହାନୁଭବତାକୁ ବିଦେଶୀ ସରକାରଙ୍କ ପ୍ରତିନିଧିଙ୍କ ପ୍ରତି ଅପମାନ ବୋଲି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ କର୍ତ୍ତୃପକ୍ଷ ଏପରି ଗୋଟିଏ ବିଚାରହୀନ କାର୍ଯ୍ୟ କରି ପକାଇଲେ।

### 1924ର ମରୁଡ଼ି

1924ର ବନ୍ୟା ଯୋଗୁଁ ମରୁଡ଼ି ପଡ଼ିଲା। ଏହି ଦୁର୍ଭିକ୍ଷବେଳେ ଗାନ୍ଧିଜୀ ଓଡ଼ିଶା ଗସ୍ତରେ ଆସିଥିଲେ। ସେ ଅଗଷ୍ଟ 22 ତାରିଖ ଦିନ କଟକରେ ପହଞ୍ଚି ସାହାଯ୍ୟ ବ୍ୟବସ୍ଥା ବିଷୟରେ ଗୋପବନ୍ଧୁଙ୍କ ଉଦ୍ୟମ ଦେଖି ବିଶେଷ ମୁଗ୍ଧ ହୋଇଥିଲେ। ସେ ଗୋପବନ୍ଧୁଙ୍କୁ ସାଙ୍ଗରେ ନେଇ ପ୍ରପୀଡ଼ିତ ଗାଁ ଗୁଡ଼ିକ ବୁଲି ଦେଖିଥିଲେ। ଏହି ଅଭିଜ୍ଞତା ଫଳରେ ସେ 1924 ନଭେମ୍ବର 20 ତାରିଖର ୟଙ୍ଗ ଇଣ୍ଡିଆରେ ଲେଖିଥିଲେ, ''ଓଡ଼ିଶା ଗସ୍ତ ବେଳେ ମୋତେ ପ୍ରଦେଶର ଦୁର୍ଭିକ୍ଷଗ୍ରସ୍ତ ଲୋକମାନଙ୍କୁ ଦେଖିବା ସୁଯୋଗ ମିଳିଥିଲା। ମୁଁ ଗୋଟିଏ ଶିଳ୍ପ କେନ୍ଦ୍ରର ଅଧ୍ୟକ୍ଷଙ୍କୁ ଭେଟି ଥିଲି। ଶିକ୍ଷା ପାଉଥିବା ଲୋକମାନେ ସବଳ, ସୁସ୍ଥ ଓ ସତେଜ ଥିବାର ଦେଖିଲି। ସେମାନେ

ବେତ କାମ ଓ ଟୋକେଇ ବୁଣା କାମରେ ଲାଗି ଥିଲେ। ମୁଁ ଖୁସୀ ହୋଇ ଅଧ୍ୟକ୍ଷଙ୍କୁ ଧନ୍ୟବାଦ ଦେଲି ସିନା, କିନ୍ତୁ ସୂତା କଟା ବ୍ୟବସ୍ଥା ନ ଥିବା ଦେଖି କ୍ଷୁବ୍ଧ ହୋଇଥିଲି। ସେତେବେଳେ ସୂତା କଟା ପ୍ରତି ବହୁ ଲୋକ ଆକୃଷ୍ଟ ହୋଇଥିଲେ। ଏହି ଶିଳ୍ପ ଶିକ୍ଷା–ନବିଶମାନେ ସିନା ସୁସ୍ଥ ଓ ସତେଜ ଥିଲେ; ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକମାନଙ୍କୁ କିପରି ଥିବାର ଦେଖିଲି ଜାଣନ୍ତି ? ସେମାନେ ଥିଲେ ଅସ୍ଥିକଙ୍କାଳସାର ! ସେମାନେ ମୃତ୍ୟୁକୁ ଅପେକ୍ଷା କରୁଥିବା ପରି ବୋଧ ହେଲା। ସେମାନେ କାୟିକ ଶ୍ରମ କରିବାକୁ ବିମୁଖ ହୋଇ ଏପରି ଦୁଃଖ ଭୋଗୁ ଥିଲେ। ସେମାନେ ଏପରି ଅଳସୁଆ ଯେ ଶାରୀରିକ ଶ୍ରମ ନ କଲେ ସେମାନଙ୍କୁ ଗୁଳି କରି ଦିଆଯିବ ବୋଲି ଧମକ ଦେଲେ ସେମାନେ ମରିବାକୁ ଶ୍ରେୟସ୍କର ମଣିବେ ପଛକେ କାମ କରିବେ ନାହିଁ। ତୁମେ ସେମାନଙ୍କୁ କିପରି କାମ କରାଇ ପାରିବ ? ସୂତା କାଟିବାକୁ କହିବା ଛଡ଼ା ସେମାନଙ୍କ ପାଇଁ ଅନ୍ୟ କୌଣସି ବିକଳ୍ପ ବ୍ୟବସ୍ଥା ନାହିଁ।''

ଡିସେମ୍ବର 26 ତାରିଖ ଦିନ ''ଓଡ଼ିଶାରୁ ଚିତ୍କାର'' ଶିରୋନାମାରେ ସି. ଏଫ୍. ଆଣ୍ଡ୍ରୁଜ୍ ଓଡ଼ିଶାରେ ତାଙ୍କ ଅଭିଜ୍ଞତା ବର୍ଣ୍ଣନା କରି ଲେଖିଥିଲେ, ''ବହୁ କାଳ ହେଲା ଦରିଦ୍ର ଓଡ଼ିଆଙ୍କ ଅବସ୍ଥା ମୋ ମନ ଓ ହୃଦୟରେ ଦୁଃସ୍ୱପ୍ନ ପରି ରହିଛି। ବିଶ୍ୱାସ ଯୋଗ୍ୟ ତଥ୍ୟରୁ ମୋର ଦୃଢ଼ ଧାରଣା ହୋଇଛି ଯେ ଭାରତବର୍ଷରେ ଓଡ଼ିଆମାନେ ସବୁଠାରୁ ବେଶି ଦରିଦ୍ର। ଗୋଟିଏ କଥା ମୋର ସବୁବେଳେ ମନେ ପଡୁଛି; ତାହା ହେଉଛି, ପ୍ରକୃତ ଦୁର୍ଭିକ୍ଷ ବେଳେ ସରକାରଙ୍କ ନିମ୍ନ କର୍ମଚାରୀମାନେ ଅସଲ ସତ କଥାଟିକୁ ଲୁଚାଇବାକୁ ଚାହିଁ ଥିଲେ। ତଥାପି ମୁଁ ଅନ୍ୟଥା ବ୍ୟସ୍ତ ରହି ପ୍ରକୃତ ଚିତ୍ର ପାଇବା ଲାଗି ସେଠାକୁ ଯାଇ ପାରିଲି ନାହିଁ। ମୋର ଏହି ନିରାଶ୍ରୟତାରେ ମୁଁ ଆଶ୍ଚର୍ଯ୍ୟାନ୍ୱିତ।

ଚୀନ, ମାଳୟ ଓ ବ୍ରହ୍ମଦେଶରେ ଗସ୍ତ ସାରି ଫେରି ଆସିବା ପରେ ବହୁ ଲୋକ ମୋତେ ଦେଖାକଲେ। ସେମାନଙ୍କ ମଧ୍ୟରେ ଥିଲେ ପଣ୍ଡିତ ଗୋପବନ୍ଧୁ ଦାସ। ସେ ସେତେବେଳେ ଜ୍ୱରରୁ ଉଠିଥିଲେ ଏବଂ ବେମାର ଓ କାରାବାସ ଯୋଗୁଁ ଅତି ଦୁର୍ବଳ ଓ ରୁଗ୍ଣ ଜଣା ପଡୁଥିଲେ। ସେ ଓଡ଼ିଶାର ମରୁଡ଼ି ପରିସ୍ଥିତି ବର୍ଣ୍ଣନା କରୁଥିବା ବେଳେ ତାଙ୍କ ଆଖିରେ ଲୁହ ଜକେଇ ଆସିଲା। ସେ କହିଲେ, ଲୋକେ ଏତେ ହତାଶ ହୋଇଗଲେଣି ଯେ ଧାନ କିଆରୀକୁ ଗୋରୁ ଛାଡ଼ି ଦେଲେଣି; ତେଣୁ ଫସଲର କୌଣସି ଆଶା ନାହିଁ। ଅସରାଏ ବର୍ଷା ହେଲେ ଫସଲ ଆଂଶିକ ଭାବରେ ରକ୍ଷା ହୋଇ ପାରନ୍ତା। ସେମାନଙ୍କ ମୁଖ୍ୟ ଫସଲ ଧାନ ନଷ୍ଟ ହୋଇ ଗଲାଣି; ଅମଳ ହେବାର ଆଦୌ ଆଶା ନାହିଁ। ଦୁର୍ଭିକ୍ଷ ପୀଡ଼ିତ ଅଞ୍ଚଳରେ ଗସ୍ତ ସାରି ଗୋପବନ୍ଧୁ ଆସିଥିଲେ ଏବଂ ମୁଁ ତାଙ୍କୁ ଅଳ୍ପ କାଳ ବିଶ୍ରାମ ନେବା କଥା କହିବାରୁ ସେ ରାଜି ନ ହୋଇ କହିଲେ, ଦୁର୍ଭିକ୍ଷାଞ୍ଚଳରେ ଲୋକେ ଏବେ ବି ନିର୍ଯ୍ୟାତିତ ହେଉଥିବାରୁ ସେ କର୍ତ୍ତବ୍ୟର ଆହ୍ୱାନରେ ସେମାନଙ୍କ ପାଖକୁ ଫେରି ଯିବା ଉଚିତ। ସତ୍ୟବାଦୀ ଆଶ୍ରମର ଅନ୍ତେବାସୀ ମାନେ ଏବେ ବି ଘୋର ଅଭାବ ଓ ଅସୁବିଧାରେ

ଅଛନ୍ତି ଏବଂ ସେଠାକାର ଛାତ୍ର ଓ ଶିକ୍ଷକମାନେ ତାଙ୍କୁ ଡକାଇଛନ୍ତି, ତେଣୁ ସେ ଫେରିଗଲେ। ତାପରେ ମୁଁ ଦିଲ୍ଲୀଠାରେ ଗାନ୍ଧିଜୀଙ୍କ ସହିତ ଦୀର୍ଘ ଆଲୋଚନା କରିଛି। ସେ ମଧ୍ୟ ଓଡ଼ିଶାଲୋକଙ୍କ ଅବସ୍ଥା ସବୁବେଳେ ମନେ ରଖିଛନ୍ତି ବୋଲି କହିଲେ। ତାଙ୍କୁ ସବୁବେଳେ ଦେଖା ଯାଉଛି, ଯେପରି ଓଡ଼ିଶାର ସେହି ଅସ୍ଥିକଙ୍କାଳସାର ଲୋକମାନେ ଅନାହାର ଯୋଗୁଁ ଆସ୍ତେ ଆସ୍ତେ ମୃତ୍ୟୁ ଆଡ଼କୁ ଗତି କରୁଛନ୍ତି। ଗାନ୍ଧିଜୀ କହିଲେ "ସରକାର ଏହି ପ୍ରପୀଡ଼ିତ ଲୋକଙ୍କୁ ଦମନ କଲେ କିପରି? ମୁଁ ଏ କଥା ଭାବି ପାରୁନାହିଁ। ଗୋଟିଏ ଅନୁସନ୍ଧାନ କରି ପ୍ରକୃତ ତଥ୍ୟ ଉଦ୍‌ଘାଟନ କରିବା ଉଚିତ।" ଭଗବାନଙ୍କ ଦୟାରୁ ଅସରାଏ ବର୍ଷା ହେଲା ଓ ଫସଲକୁ ଆଂଶିକ ଭାବରେ ରକ୍ଷା କରିହେଲା। ମୁଁ ଦିଲ୍ଲୀରୁ ଫେରିବାର କିଛି ଦିନ ପରେ ଗୋପବନ୍ଧୁଙ୍କୁ ଭେଟି ଦେଖିଲି ତାଙ୍କ ମୁହଁ ଟିକିଏ ପ୍ରଫୁଲ୍ଲ ଦେଖାଯାଉଛି, ତଥାପି ମୋତେ ସ୍ପଷ୍ଟ ଜଣାଗଲା, ଯେପରି କି ସେ ଲୋକଙ୍କ ଦୁର୍ଦ୍ଦଶାରେ ବ୍ୟାକୁଳ ଓ ଚିନ୍ତାଗ୍ରସ୍ତ ହୋଇ ନିଜେ ଆସ୍ତେ ଆସ୍ତେ ମୃତ୍ୟୁ ପଥରେ ଗତି କରୁଛନ୍ତି।"

**1925ର ବନ୍ୟା**

ବିଧିର ବିଧାନ ଅକଳନୀୟ। ପୁରୀ ଜିଲ୍ଲାରେ ଅଭୂତପୂର୍ବ ବନ୍ୟା ହୋଇ ଗୋଟିଏ ବିରାଟ ଅଞ୍ଚଳ 1925 ଜୁନ୍‌ରୁ ଅଗଷ୍ଟ ପର୍ଯ୍ୟନ୍ତ ବଢ଼ି ପାଣିରେ ବୁଡ଼ି ରହିଥିଲା। ବନ୍ୟା ପୀଡ଼ିତ ଲୋକଙ୍କ ଅବସ୍ଥା ଶୋଚନୀୟ ହୋଇ ଯାଇଥିଲା ଓ ସେମାନଙ୍କ ଦୁଃଖ ଅବର୍ଣ୍ଣନୀୟ ଥିଲା। ସେମାନଙ୍କ ଦୁଃଖ ଦୂର କରିବାକୁ ବ୍ୟାକୁଳ ହୋଇ ଗୋପବନ୍ଧୁ, ଆଚାର୍ଯ୍ୟ ହରିହର ଦାସ ଓ ଅନ୍ୟ ସ୍ୱେଚ୍ଛା-ସେବକମାନଙ୍କ ସାହାଯ୍ୟରେ ସାହାଯ୍ୟ କାର୍ଯ୍ୟ ସଂଗଠିତ କରିଥିଲେ, କିନ୍ତୁ ଗ୍ରାମଗୁଡ଼ିକ ବଢ଼ି ପାଣିରେ ବୁଡ଼ି ଥିବାରୁ ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବା ଏକା ବେଳକେ ଅସମ୍ଭବ ଥିଲା। ଜମିରେ ଫସଲ ନ ଥିଲା, ଘରେ ଖାଦ୍ୟ ନ ଥିଲା ଓ ଗୋ-ଖାଦ୍ୟ ଅଭାବରୁ ହଜାର ହଜାର ଗୋରୁଗାଈ ମରିଗଲେ। ଲୋକେ ଯେ କୌଣସି ସବୁଜ ପତ୍ର ଖାଇ ପ୍ରାଣ ରକ୍ଷା କରିବାକୁ ବ୍ୟାକୁଳ ଥିଲେ; ଏହି ପତ୍ର ବି ମିଳୁ ନ ଥିଲା। ସ୍ୱେଚ୍ଛା-ସେବକମାନେ ଯେଉଁ କେତେ ସେର ଚାଉଳ ବାଣ୍ଟୁଥିଲେ, ତାହା ଏହି ଲୋକମାନଙ୍କୁ ସାମାନ୍ୟ ଆଶ୍ୱାସନା ଓ ନୈତିକ ସାହସ ଦେବା ଛଡ଼ା ଆଉ କି ସାହାଯ୍ୟ ହେବ? ଗୋପବନ୍ଧୁ ଅବସ୍ଥା ଦେଖିବା ପାଇଁ ଗାଁକୁ ଗାଁ ଯାଉଥିଲେ; ସେଠାରେ ଦାରୁଣ ଦୃଶ୍ୟ ଦେଖି ସେ ଅବଶ ହୋଇ ପଡ଼ିଥିଲେ। ମଫସଲ ଲୋକଙ୍କ ଅବସ୍ଥା ବର୍ଣ୍ଣନା କରିବା ଲାଗି ସେ ପୁରୀ ଠାରେ ଗୋଟିଏ ସାଧାରଣ ସଭା କଲେ ଓ ଏଥି ପ୍ରତି ବିଧାନ ପରିଷଦର ସଭ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ଗାଁ ଗହଳିରେ ନିଜ ଅଭିଜ୍ଞତା ବର୍ଣ୍ଣନା କରୁ କରୁ ଗୋପବନ୍ଧୁ ବିକଳ ହୋଇ କାନ୍ଦି ପକାଇ ଥିଲେ ଓ ସମସ୍ତଙ୍କ ଠାରୁ ସାହାଯ୍ୟ ଭିକ୍ଷା କରିଥିଲେ। ଏହି କ୍ଷୁଧାର୍ତ୍ତ ଲୋକମାନଙ୍କୁ ଖୁଆଇବା ଦାୟିତ୍ୱ ନେବା ଲାଗି ସେ ମଠଗୁଡ଼ିକୁ ନିବେଦନ କରିବା ଫଳରେ ଏମାର ମଠ ମହନ୍ତ ଦୁଇ ହଜାର ଟଙ୍କା ଚାନ୍ଦା ଦେଇଥିଲେ।

ତା ପରେ ପରେ ପୁରୀ ବନ୍ୟା ସାହାଯ୍ୟ କମିଟିର ବୈଠକ ହେଲା ଏବଂ ସେମାନେ ମାଗଣା ଓ ପଇସା ଦିଆ ସାହାଯ୍ୟ ବ୍ୟବସ୍ଥା କରିବାକୁ ସ୍ଥିର କଲେ। ପ୍ରପୀଡ଼ିତ ଗ୍ରାମମାନଙ୍କରେ ସୂତା କଟା ଓ ଲୁଗା ବୁଣା କେନ୍ଦ୍ର ଖୋଲିବା ଲାଗି କମିଟି ଗୋପବନ୍ଧୁଙ୍କୁ ଅନୁରୋଧ କରିଥିଲେ ଏବଂ କେଉଁଠାରେ ପାରଂପରିକ ଦୃଷ୍ଟିକୋଣରୁ ଏପରି କେନ୍ଦ୍ର ଖୋଲିବା ବିଷୟରେ ଆପତ୍ତି ହେଲେ ବିକଳ୍ପ ବ୍ୟବସ୍ଥା କରିବା ଲାଗି ତାଙ୍କୁ ଅଧିକାର ଦିଆ ଯାଇଥିଲା। ଏହି ଦାୟିତ୍ୱ ଗ୍ରହଣ କରି ଗୋପବନ୍ଧୁ ବଙ୍ଗଳାର ଖଦୀ ପ୍ରତିଷ୍ଠାନ ସହିତ ସଂପର୍କ ପ୍ରତିଷ୍ଠା କରି ତାଙ୍କ ସାହାଯ୍ୟରେ ସୂତା କଟା ଓ ଲୁଗା ବୁଣା କେନ୍ଦ୍ର ଖୋଲିବା ବ୍ୟବସ୍ଥା କଲେ। ଏପରି ବ୍ୟବସ୍ତା ହେଲା ଯେ ଚରଖା କେନ୍ଦ୍ର ଗୁଡ଼ିକରେ କଟା ହୋଇଥିବା ସୂତାରେ ବୟନ କେନ୍ଦ୍ରରେ ବିଭିନ୍ନ କିସମର ଲୁଗା ବୁଣା ହେଲା ଏବଂ ଏହି ହାତ କଟା ସୂତାରେ ହାତ ବୁଣା ଲୁଗାରୁ ଯାହା ଲାଭ ହେଲା, ତାକୁ ପୁଣି ନୂଆ ନୂଆ କେନ୍ଦ୍ର ଖୋଲିବାରେ ବ୍ୟୟ କରାଗଲା। ଗୋପବନ୍ଧୁ ପୁରୀ ଚରଖା ସାହାଯ୍ୟ ସଂଗଠନକୁ ଏପରି ଦୃଢ଼ ଭିତ୍ତିରେ ପ୍ରତିଷ୍ଠା କରିଥିଲେ ଯେ ଏହା ଏ ପର୍ଯ୍ୟନ୍ତ ସଫଳ ଭାବରେ ଚାଲିଛି।

### 1925ରେ ଆଣ୍ଡ୍ରୁଜଙ୍କ ଓଡ଼ିଶା ଆଗମନ

1924 ମରୁଡ଼ି ବେଳେ ଆଣ୍ଡ୍ରୁଜଙ୍କ ଅଭିଜ୍ଞତା ଯୋଗୁଁ ସେ ପୂର୍ବବର୍ତ୍ତୀ ମନ୍ତବ୍ୟ ପ୍ରକାଶ କରିଥିଲେ, କିନ୍ତୁ 1925 ରେ ବନ୍ୟା ଯୋଗୁଁ କ୍ଷୟକ୍ଷତିର ପରିମାଣ ଆହୁରି ବେଶି ହୋଇଥିଲା ଓ ସାହାଯ୍ୟ ବ୍ୟବସ୍ଥା କରିବା ଓଡ଼ିଶା ପକ୍ଷରେ ସାଧ୍ୟାତୀତ ଥିଲା । ତେଣୁ ଗୋପବନ୍ଧୁ ମହାତ୍ମା ଗାନ୍ଧିଙ୍କ ଠାରୁ ସାହାଯ୍ୟ ପ୍ରାର୍ଥନା କରିବାରୁ ସେ କ୍ଷେତ୍ର ଉପରେ ପରିସ୍ଥିତି ଅନୁଧାନ କରିବା ଲାଗି ସି. ଏଫ୍. ଆଣ୍ଡ୍ରୁଜଙ୍କୁ ପଠାଇଲେ। ଅକ୍ଟୋବର ଚାରି ତାରିଖ ଦିନ ଆଣ୍ଡ୍ରୁଜ ସାହେବ ପୁରୀ ଷ୍ଟେସନରେ ଓହ୍ଲାଇବା ବେଳେ ତାଙ୍କୁ ଗୋପବନ୍ଧୁ, ବନମାଳି ଦାଶ, ଜଗବନ୍ଧୁ ସିଂହ ଓ ରାଧାନାଥ ରଥଙ୍କ ସମେତ ବିରାଟ ଜନତା ପାଛୋଟି ନେଇଥିଲେ। ଗୋପବନ୍ଧୁଙ୍କୁ ସାଙ୍ଗରେ ନେଇ ଆଣ୍ଡ୍ରୁଜ ସାହେବ ପୁରୀ ଜିଲ୍ଲାର ପ୍ରପୀଡ଼ିତ ଅଞ୍ଚଳ ବୁଲିଥିଲେ। ସେଥି ମଧ୍ୟରେ ଭାର୍ଗବୀ କୂଳରେ ଥିବା ଚନ୍ଦନପୁର ଓ ସମଗରା ପାଟ ପାଖରେ ଥିବା ହରେକୃଷ୍ଣପୁର ପ୍ରଧାନ। ସେମାନେ କେତେ ଗୋଟି ପରିବାରର ଘର ଭିତରକୁ ଯାଇଥିଲେ ଓ ସେମାନଙ୍କର କୌଣସି ଆସବାବ ପତ୍ର ନ ଥିବାର ଦେଖିଲେ– ଛଳଛଳ ଆଖିରେ କହିଲେ,"ମୁଁ ଏପରି ଉତ୍କଟ ଦାରିଦ୍ର୍ୟ ଅନ୍ୟ କେଉଁଠି ଦେଖି ନାହିଁ।" ସାହାଯ୍ୟ ପାଇବା ଆଶାରେ ଲୋକମାନେ ତାଙ୍କୁ ଘେରି ଯାଇଥିଲେ। ସେମାନଙ୍କ ଶୀର୍ଣ୍ଣ ମୁହଁ ଦେଖି ସେ କାନ୍ଦି ପକାଇ କହିଲେ, "ଏହି ଶୀର୍ଣ୍ଣ ଲୋକମାନଙ୍କ ମୁହଁ ଓ ନାକର ଗଠନରୁ ଜଣା ପଡୁଛି ସେମାନଙ୍କ ପୂର୍ବପୁରୁଷମାନେ ଶିକ୍ଷା, ସଭ୍ୟତା, ସାହସ ଓ ଶାରୀରିକ ସାମର୍ଥ୍ୟରେ ଅତି ଉନ୍ନତ ଥିଲେ; ଦୁଃଖର କଥା, ଦାରିଦ୍ର୍ୟ ସେମାନଙ୍କୁ ପେଷି ଦେଇଛି। ସେମାନଙ୍କୁ ବନ୍ୟା ଓ ଦୁର୍ଭିକ୍ଷ ଧ୍ୱଂସ କରି ଦେଇଛି। ସେମାନଙ୍କ କ୍ଷତିକୁ ଭରଣା କରି ହେବ ନାହିଁ।"–ସେ ସଦର, ବ୍ରହ୍ମଗିରି ଓ ସତ୍ୟବାଦୀ ଅଞ୍ଚଳର

ବହୁ ଗ୍ରାମ ବୁଲିଥିଲେ, ଚନ୍ଦନପୁର ପାଖରେ ଗୋଟିଏ ଗାଁକୁ ଯାଉଥିବା ବେଳେ ଡଙ୍ଗା ଓଲଟି ପଡ଼ିବାରୁ ସେ ଅଳ୍ପକେ ରକ୍ଷା ପାଇ ଯାଇଥିଲେ। ସେ ମଧ୍ୟ ଗୋଟିଏ ବେତବୁଦାରେ ପଡ଼ିଯାଇ ରକ୍ତାକ୍ତ ହୋଇଥିଲେ। ପୁରୀକୁ ଫେରି ଆସି ନ ପାରି ସେମାନେ ରାତିରେ ବାସୁଦେବପୁର ଗାଁର ଗୋଟିଏ ଗୁହାଳରେ ଶୋଇଲେ ଏବଂ ରାତ୍ରିଭୋଜନ ପାଇଁ କେତେ ଖଣ୍ଡ ପାଉଁରୁଟି ଓ କଦଳୀ ଖାଇଥିଲେ। ତଥାପି ଆଣ୍ଡ୍ରୁଜ ସାହେବ ଏହି ଭୀଷଣ ଦୃଶ୍ୟ ଦେଖି ଏପରି ବ୍ୟସ୍ତ ହୋଇ ପଡ଼ିଥିଲେ ଯେ ଖରାପ ପାଗ ଓ ବ୍ୟକ୍ତିଗତ ଅସୁବିଧା ସତ୍ତ୍ୱେ ସେ ପ୍ରପୀଡ଼ିତ ଗ୍ରାମଗୁଡ଼ିକୁ ପରିଦର୍ଶନ କରି ଚାଲିଥିଲେ। ଅକ୍ଟୋବର ଆଠ ତାରିଖ ଦିନ ସେମାନେ ସତ୍ୟବାଦୀ ବିଦ୍ୟାଳୟରେ ପହଞ୍ଚିଲେ ଏବଂ ସେହି ଠାରୁ ସେ ମହାତ୍ମା ଗାନ୍ଧି ଓ ଅନ୍ୟ କେତେ ଜଣଙ୍କୁ ଚିଠି ଲେଖି ଏହି ହୃଦୟ ବିଦାରକ ଦୃଶ୍ୟ ବର୍ଣ୍ଣନା କରିଥିଲେ। ସେ ରାତିରେ ଗୋପବନ୍ଧୁଙ୍କ ଠାରୁ ବିଦାୟ ନେଇଥିଲେ ଏବଂ ବିଦାୟ ବେଳେ ସେ ଗୋପବନ୍ଧୁଙ୍କୁ କୁଣ୍ଢାଇ ପକାଇ କହିଲେ, ''ଭଗବାନ ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ କରନ୍ତୁ। ଭଗବାନ ତୁମକୁ ଆଶୀର୍ବାଦ କରନ୍ତୁ।''

# ବିଧାନ ପରିଷଦରେ ପ୍ରବେଶ କାର୍ଯ୍ୟକ୍ରମ

1919ର ଭାରତ ଶାସନ ଆଇନ ଅନୁସାରେ 1923ର ଦ୍ୱିତୀୟ ସାଧାରଣ ନିର୍ବାଚନରେ କଂଗ୍ରେସର ସ୍ୱରାଜ ଦଳ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଓ ପଣ୍ଡିତ ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ଭାଗ ନେଇଥିଲେ। 1926ରେ ତୃତୀୟ ସାଧାରଣ ନିର୍ବାଚନ ହେବାର ଥିଲା। ଓଡ଼ିଶାର କେତେ ଜଣ କଂଗ୍ରେସ ଲୋକ ଏହି ନିର୍ବାଚନରେ ଭାଗ ନେବାକୁ ବ୍ୟଗ୍ର ଥିଲେ; ତେଣୁ ଓଡ଼ିଶାର କଂଗ୍ରେସ ଲୋକ ପରିଷଦ-ପ୍ରବେଶ ଯୋଜନା ଗ୍ରହଣ କରିବେ କି ନାହିଁ ତାହା ସ୍ଥିର କରିବା ଲାଗି ପ୍ରାଦେଶିକ କଂଗ୍ରେସ କମିଟିର ଗୋଟିଏ ବୈଠକ ଆହୂତ ହେଲା, କିନ୍ତୁ ସଂଖ୍ୟାଧିକ ମତ ପରିଷଦ-ପ୍ରବେଶ ଯୋଜନା ସପକ୍ଷରେ ହେବାରୁ ଜଣେ ସଚ୍ଚା ଗଣତନ୍ତ୍ରବାଦୀ ଭାବରେ ସେ ଉକ୍ତ ନିଷ୍ପତ୍ତିକୁ ଗ୍ରହଣ କରି କଂଗ୍ରେସ ପ୍ରାର୍ଥୀମାନଙ୍କୁ ବାଛିବାରେ ଲାଗିଗଲେ। ସାଧାରଣ ନିର୍ବାଚନ ପରିଚାଳନା କରିବା ଓ ବିଧାନ ପରିଷଦର ବ୍ୟବସ୍ଥାପକମାନଙ୍କ କାର୍ଯ୍ୟକଳାପ ନିୟନ୍ତ୍ରଣ କରିବା ଦାୟିତ୍ୱ ପ୍ରାଦେଶିକ କଂଗ୍ରେସ କମିଟି ଗୋପବନ୍ଧୁଙ୍କ ଉପରେ ନ୍ୟସ୍ତ କଲେ। ସେ ନିଜେ ଏ ଯୋଜନାର ବିରୋଧୀ ଥିବାରୁ ଗୋପବନ୍ଧୁ ପ୍ରଥମେ ଏହି ଦାୟିତ୍ୱ ଗ୍ରହଣ କରିବାକୁ ରାଜି ନ ଥିଲେ, କିନ୍ତୁ କମିଟିର ସଭ୍ୟମାନେ ଜିଦ୍ କରିବାରୁ ସେ ଏହି ଦାୟିତ୍ୱ କେତେକ ସର୍ତ୍ତରେ ବହନ କରିଥିଲେ । ସର୍ତ୍ତଗୁଡ଼ିକ ହେଲା, (1) ପ୍ରାଦେଶିକ କଂଗ୍ରେସ କମିଟିର ଗୋଟିଏ ଉପସମିତି ନିର୍ବାଚନ ଦାୟିତ୍ୱରେ ରହିବ, (2) ଏହି ଉପସମିତି ନିର୍ବାଚିତ ସଭ୍ୟମାନଙ୍କ କାର୍ଯ୍ୟ ତଦାରଖ କରିବ, (3) ପ୍ରାଦେଶିକ ବିଧାନ ପରିଷଦ ଓ କେନ୍ଦ୍ର ବିଧାନ ସଭାର ପ୍ରତ୍ୟେକ ସଭ୍ୟ ଯଥାକ୍ରମେ ମାସିକ ଦଶ ଟଙ୍କା ଓ କୋଡ଼ିଏ ଟଙ୍କା ହିସାବରେ ପ୍ରାଦେଶିକ କଂଗ୍ରେସ କମିଟି ପାଣ୍ଠିକୁ ଚାନ୍ଦା ଦେବେ, (4) ପ୍ରତ୍ୟେକ ସଭ୍ୟ ବ୍ୟବସ୍ଥାପକ ସଭା ଭିତରେ ଓ ବାହାରେ କ'ଣ କରୁଛନ୍ତି ତାହାର ଏକ ତିନିମାସିଆ ବିବରଣୀ ଦାଖଲ କରିବେ ଏବଂ (5) ଜନମତ ତିଆରି ଓ ସଂଗଠିତ କରିବା ଲାଗି ପ୍ରତ୍ୟେକ ସଭ୍ୟ ନିଜ ନିର୍ବାଚନ ମଣ୍ଡଳୀରେ ମତଦାତା ପରିଷଦମାନ ଗଠନ କରିବେ।

ଏହି ସର୍ତ୍ତଗୁଡ଼ିକ ପ୍ରାଦେଶିକ ବିଧାନ ପରିଷଦ ଓ କେନ୍ଦ୍ର ବିଧାନ ସଭା ପାଇଁ ଦଳର ପ୍ରାର୍ଥୀ ରୂପେ ମନୋନୀତ ହୋଇଥିବା ସଭ୍ୟମାନଙ୍କୁ ଜଣାଇ ଦିଆଗଲା ଏବଂ ସେମାନେ ଏହାକୁ ଗ୍ରହଣ କରିବା ପରେ କଂଗ୍ରେସ ସରକାରୀ ଭାବରେ ଉକ୍ତ ଯୋଜନା ଗ୍ରହଣ କଲା।

ନିର୍ବାଚନ ଚାଲିଥିବା ବେଳେ ମଧ୍ୟ ଗୋପବନ୍ଧୁ ନିଜ ରଚନାତ୍ମକ କର୍ମଯୋଜନାରୁ ବିରତ ନ ଥିଲେ। ଗଞ୍ଜାମର ପାଟବୁଣା ଗୋଟିଏ ପ୍ରତିଷ୍ଠିତ ଓ ସମୃଦ୍ଧିଶାଳୀ ଶିଳ୍ପ ଥିଲା ଓ ଦେଶ ସାରା ଏହି ପାଟ ଆଦୃତ ହେଉଥିଲା ବୋଲି ସେ ଜାଣିଥିଲେ। ବ୍ରହ୍ମପୁରର ତନ୍ତୀମାନେ ହାତତନ୍ତରେ ପାଟ ବୁଣୁଥିଲେ; ତେଣୁ ସୂତା କଟା ଓ ଲୁଗା ବୁଣା ଅନ୍ୟାନ୍ୟ ଅଞ୍ଚଳରେ ଲୋକପ୍ରିୟ ହୋଇ ନ ଥିଲେ ହେଁ ଗଞ୍ଜାମରେ ପାଟ ବୁଣାଳିମାନେ ନିଜ ପାରଂପରିକ ବ୍ୟବସାୟରେ ଲାଗିଥିଲେ। ଏହି ଶିଳ୍ପକୁ ପୁନର୍ଗଠିତ ଓ ବିକଶିତ କରିବା ଲାଗି ଗୋପବନ୍ଧୁ ନିର୍ବାଚନ ଭିତରେ ମଧ୍ୟ ଗଞ୍ଜାମ ଜିଲ୍ଲା ଗସ୍ତ କରିଥିଲେ।

### 1926ରେ ବନ୍ୟା

ନିର୍ବାଚନର ଅବ୍ୟବହିତ ପରେ 1926 ଅଗଷ୍ଟ ମାସରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ବହୁ ଅଞ୍ଚଳ ବନ୍ୟାରେ ଧ୍ୱଂସ ପାଇଥିଲା। ଏହି ବନ୍ୟା ଅଭୂତପୂର୍ବ ଥିଲା ଓ ଅନ୍ୟ ବର୍ଷର ବନ୍ୟା ତୁଳନାରେ ଏହା ସବୁଠାରୁ ବେଶୀ ପ୍ରଳୟଙ୍କରୀ ଥିଲା। ବନ୍ୟା ପ୍ଲାବିତ ଅଞ୍ଚଳରୁ ଚିଠି ଓ ତାର ବୋହି ଆସିଲା, କିନ୍ତୁ ଏହି ହତଭାଗ୍ୟ ଲୋକଙ୍କ ଦୁର୍ଭାଗ୍ୟକୁ ଗୋପବନ୍ଧୁ ବେମାର ପଡ଼ିଲେ ଓ ସହସା ବନ୍ୟାଞ୍ଚଳକୁ ଯାଇ ପାରି ନ ଥିଲେ। ପ୍ରାଥମିକ ପଦକ୍ଷେପ ସ୍ୱରୂପ ସେ ପୁରୀରୁ ବିଭିନ୍ନ ସ୍ଥାନକୁ ସ୍ୱେଚ୍ଛା ସେବକ ଦଳ ପଠାଇ ଥିଲେ। କଟକ ଓ ବାଲେଶ୍ୱର ଜିଲ୍ଲାରେ ବନ୍ୟା ବିଧ୍ୱସ୍ତ ଅଞ୍ଚଳର ପରିସ୍ଥିତି ବିଷୟରେ ବିଶ୍ୱାସଯୋଗ୍ୟ ଓ ପ୍ରକୃତ ସଂବାଦ ସଂଗ୍ରହ କରିବା ଲାଗି ସେ କଟକର ଭାଗୀରଥୀ ମହାପାତ୍ର ଓ ବାଲେଶ୍ୱରର ହରେକୃଷ୍ଣ ମହତାବଙ୍କ ନିକଟକୁ ତାରବାର୍ତ୍ତା ପଠାଇ ଥିଲେ। ପୁରୀ ଜିଲ୍ଲାରେ ତୁରନ୍ତ ସାହାଯ୍ୟ କରିବା ଲାଗି ସେ ବିଭିନ୍ନ ସ୍ଥାନରେ ଚରଖା କେନ୍ଦ୍ର ଓ କେତେ ଜାଗାରେ ମାଗଣା ସାହାଯ୍ୟ କେନ୍ଦ୍ର ଖୋଲିଥିଲେ। ଗୋପବନ୍ଧୁ ମହାତ୍ମା ଗାନ୍ଧି, ସି. ଏଫ୍. ଆଣ୍ଡ୍ରୁଜ ଓ ଏ. ଭି. ଥକ୍କରଙ୍କ ନିକଟକୁ ସଂବାଦ ପଠାଇଲେ ଏବଂ ଓଡ଼ିଶା ଓ ବାହାରର ସଂବାଦପତ୍ର ମାନଙ୍କରେ କ୍ଷୟକ୍ଷତିର ବିବରଣୀ ପ୍ରକାଶ କରିଥିଲେ। ଟଙ୍କାର ସୁଅ ଛୁଟିଲା ଏବଂ ଭଗ୍ନ ସ୍ୱାସ୍ଥ୍ୟ ସତ୍ତ୍ୱେ ଗୋପବନ୍ଧୁ ଲୋକଙ୍କୁ ସାହାଯ୍ୟ ଦେବା ଲାଗି ବନ୍ୟା ବିଧ୍ୱସ୍ତ ଅଞ୍ଚଳରେ ନାନା ସ୍ଥାନ ବୁଲିଥିଲେ। ଏତିକି ବେଳେ ମାନବହିତୈଷୀ ଗୋପବନ୍ଧୁଙ୍କ ମହତ୍ତ୍ୱ ପ୍ରତିପାଦିତ ହୋଇଥିଲା।

# ଗୋପବନ୍ଧୁ ଓ ଲାଲା ଲଜପତ୍ ରାୟ

ତାଙ୍କ ଜୀବନରେ ସର୍ବ ପ୍ରଥମେ ଗୋପବନ୍ଧୁ ସେପ୍ଟେମ୍ବର 1920 ରେ କଲିକତାରେ ଅନୁଷ୍ଠିତ କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନରେ ପଞ୍ଜାବ କେଶରୀ ଲାଲା ଲଜପତ୍ ରାୟଙ୍କୁ ଭେଟି ତାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇଥିଲେ। 1925 ଅପ୍ରେଲ ମାସରେ ଲାଲା ଲଜପତ ରାୟ ପୁରୀ ଆସି ତିନି ଦିନ ରହିଥିଲେ। ପୁରୀରେ ଅବସ୍ଥାନ କାଳରେ ଲାଲାଜୀ "ଦୁଃଖିନୀ ଭାରତ ମାତା" (Unhappy India) ପୁସ୍ତକ ଲେଖିବାରେ ବ୍ୟସ୍ତ ଥାଇ ବିହାରର ଜଗତ୍ ନାରାୟଣ ଲାଲଙ୍କୁ ଶ୍ରୁତଲିଖନ ଦେଉଥିଲେ। ସେତେବେଳେ ଲାଲାଜୀ ମଧ ହିନ୍ଦୁ ମହାସଭା ସଂଗଠନ କାର୍ଯ୍ୟରେ ଲାଗି ଥିଲେ ଏବଂ ଏହି ହିନ୍ଦୁ ସଂଗଠନର ଦୃଢ଼ୀକରଣ ଉଦ୍ଦେଶ୍ୟରେ ସେ ଦେଶର ବିଭିନ୍ନ ସ୍ଥାନରୁ କର୍ମୀ ସଂଗ୍ରହ କରୁଥିଲେ।

1925 ମସିହା ଅପ୍ରେଲ19 ତାରିଖ ଦିନ ପୁରୀରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ସେ ଜଣେ କଂଗ୍ରେସ ସଭ୍ୟ ଓ ଲୋକ ସେବକ ମଣ୍ଡଳର ସଭାପତି ଥାଇ ସୁଦ୍ଧା କାହିଁକି ହିନ୍ଦୁ ମହାସଭା ସଂଗଠନ କାର୍ଯ୍ୟ ହାତକୁ ନେଇଛନ୍ତି, ତାହା ବୁଝାଇଥିଲେ। ହିନ୍ଦୁମାନଙ୍କୁ ସଂଗଠିତ କରି ସ୍ୱରାଜର ଭିତ୍ତି ଦୃଢ଼ କରିବା ଲାଗି ସେ ପରାମର୍ଶ ଦେଇଥିଲେ। ଲାଲାଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଶାରେ ହିନ୍ଦୁ ମହାସଭାର ଗୋଟିଏ ସଂଗଠନ ହେଲା ଏବଂ ଧନପତି ବାନାର୍ଜୀ ଓ ପଣ୍ଡିତ ନୀଳକଣ୍ଠ ଦାସ ଯଥାକ୍ରମେ ଏହାର ସଭାପତି ଓ ସଂପାଦକ ନିଯୁକ୍ତ ହେଲେ।

ଏହି ସଂକ୍ରାନ୍ତରେ ଲାଲାଜୀ ଓ ଗୋପବନ୍ଧୁଙ୍କ ମଧ୍ୟରେ ପତ୍ର ବିନିମୟ ହୋଇଥିଲା। ଲାଲାଜୀ ତାଙ୍କର 1926 ମସିହା ଜାନୁୟାରୀ 28 ତାରିଖ ପତ୍ରରେ ଲେଖିଥିଲେ,

"ପ୍ରିୟ ଗୋପବନ୍ଧୁ ,

ଏଣିକି ମୁଁ ତମକୁ ଗୋପବନ୍ଧୁ ବୋଲି ସଂବୋଧନ କରିବି। ମୁଁ ତୁମ ଚିଠି ପାଇ ସେଥିରେ ଲେଖିଥିବା ବିଷୟ ଅବଗତ ହେଲି। ତୁମ ପ୍ରଦେଶରେ ହିନ୍ଦୁ ମହାସଭାର ସଂପୂର୍ଣ୍ଣ ଦାୟିତ୍ୱ ତୁମେ ନେଲେ ମୁଁ ଖୁସୀ ହୁଅନ୍ତି। ତୁମେ ଶୀଘ୍ର ଏ ବିଷୟରେ ମୋ'ଠାରୁ ଗୋଟିଏ ଆନୁଷ୍ଠାନିକ ପତ୍ର ପାଇବ। ବର୍ତ୍ତମାନ ମୁଁ ଏତେ କାର୍ଯ୍ୟ ବ୍ୟସ୍ତ ଯେ ଗୋଟିଏ ଦୀର୍ଘ ପତ୍ର ଲେଖିବାକୁ ଅକ୍ଷମ, ଅଳ୍ପ ଦିନ ଭିତରେ ଏପରି ଏକ ପତ୍ର ଲେଖିବି ।"

1926 ମସିହା ଫେବୃୟାରୀ ମାସରେ ଗୋପବନ୍ଧୁ ଲାଲା ଲଜପତ ରାୟଙ୍କୁ ଆଉ ଥରେ ଭେଟିବା ବେଳେ ସୂଚନା ଦେଇଥିଲେ ଯେ ଗୋପବନ୍ଧୁ ଲୋକ ସେବକ ମଣ୍ଡଳର ସଭ୍ୟ ହେଲେ ସେ ଗତ ପଚାଶ ବର୍ଷ ଧରି ଯେଉଁ କାମ କରି ଆସିଛନ୍ତି, ତାହା ଚାଲୁ ରଖିବାରେ କୌଣସି ଅସୁବିଧା ହେବ ନାହିଁ। ଗୋପବନ୍ଧୁଙ୍କ ସଭ୍ୟପଦ ମଣ୍ଡଳ ପାଇଁ କେତେ ମୂଲ୍ୟବାନ ତାହା ମଧ୍ୟ ଲାଲାଜୀ ବୁଝାଇ ଦେଇଥିଲେ। ସେ ଆହୁରି ମଧ୍ୟ କହିଥିଲେ ଯେ ଏତଦ୍ୱାରା ଗୋପବନ୍ଧୁଙ୍କ ଅସଂଗଠିତ କାର୍ଯ୍ୟାବଳୀ ଏକ ଆକାର ଗ୍ରହଣ କରିବ। ତାଙ୍କ ସ୍ୱାଧୀନତା ଓ ମତାମତ ଉପରେ କୌଣସି ହସ୍ତକ୍ଷେପ ହେବ ନାହିଁ। ଲାଲାଜୀଙ୍କ ନିବେଦନ ଗୋପବନ୍ଧୁଙ୍କୁ ଏପରି ପ୍ରଭାବିତ କରିଥିଲା ଯେ କେତେ ଦିନ ଚିନ୍ତା କରିବା ପରେ ସେ ମଣ୍ଡଳର ସଭ୍ୟ ହେବା ଲାଗି ସ୍ୱୀକୃତି ଦେଇଥିଲେ। ସଂଗଠିତ ଉଦ୍ୟମରେ ଗୋପବନ୍ଧୁଙ୍କର ପ୍ରଗାଢ଼ ଆସ୍ଥା ଥିଲା; ତେଣୁ ସେ ଜୀବନ ସାରା ନିଜ କାର୍ଯ୍ୟକ୍ରମକୁ ଆଗେଇ ନେବା ଲାଗି ସଂଘ ଓ ସମିତି ଗଢ଼ିବାରେ ବ୍ୟସ୍ତ ଥିଲେ। 1920 ରେ ଥରେ ସତ୍ୟବାଦୀ ସ୍କୁଲକୁ ପୁନାସ୍ଥିତ ହିନ୍ଦୁ ସେବକ ସମାଜର ଗୋଟିଏ ଅନୁଷ୍ଠାନ କରିବା ଲାଗି ଗୋପବନ୍ଧୁ ମାନ୍ୟବର ଭି.ଏସ. ଶ୍ରୀନିବାସ ଶାସ୍ତ୍ରୀଙ୍କ ସହିତ ପତ୍ରାଳାପ କରିଥିଲେ। ତେଣୁ ଲାଲାଜୀଙ୍କ ପ୍ରସ୍ତାବକୁ ସେ ଦେବଦତ୍ତ ବିଚାରି ଲାହୋରସ୍ଥିତ ଲୋକ ସେବକ ମଣ୍ଡଳର ସଭ୍ୟ ପଦ ଗ୍ରହଣ କଲେ।

ଗୋପବନ୍ଧୁ ମଣ୍ଡଳର ସଭ୍ୟ ପଦ ଗ୍ରହଣ କରିବା ପରେ ଲାଲାଜୀ ଦିଲ୍ଲୀର ରେଜିନା ଠିକଣାରୁ ତାଙ୍କ ନିକଟକୁ ଗୋଟିଏ ପତ୍ରରେ ଲେଖିଥିଲେ,

''ପ୍ରିୟ ଗୋପବନ୍ଧୁ ବାବୁ,

ହିନ୍ଦୁ ମହା-ସଭାର କାର୍ଯ୍ୟକାରୀ ସମିତି ହିନ୍ଦୁ ସଂଗଠନର ଦାୟିତ୍ୱ ତୁମକୁ ଦେବା ଲାଗି ଆନୁଷ୍ଠାନିକ ଭାବରେ ନିଷ୍ପତ୍ତି କଲା। ଓଡ଼ିଶାରେ ସାହାଯ୍ୟ କାର୍ଯ୍ୟର ଦାୟିତ୍ୱ ମୁଁ ତୁମ ହାତରେ ସଂପୂର୍ଣ୍ଣ ରୂପେ ଛାଡ଼ି ଦେବାକୁ ଚାହୁଁଛି। ମୋ ପାଖରେ ଥିବା ଟଙ୍କା ଦଶ ହଜାରରୁ ବେଶି ହେବ। ତୁମେ ଚାହିଁଲେ ଏ ଟଙ୍କା ମୁଁ ତୁମ ପାଖକୁ ପଠାଇ ଦେବି। ତୁମ ନିବେଦନଟିକୁ ଛାପିବା ଲାଗି ମୁଁ ଟ୍ରିବ୍ୟୁନକୁ ପଠାଇ ଦେଇଛି। ମୁଁ ନିଜେ ମଧ୍ୟ 'ଜନତା' (People) ରେ ଗୋଟିଏ ଟିପ୍ପଣୀ ଲେଖିବି।''

ଏଥିରୁ ଜଣାପଡୁଛି ଯେ ଗୋପବନ୍ଧୁ ମଣ୍ଡଳର ସଭ୍ୟ ହେବା ପରେ ତାଙ୍କ ଜନ ସେବା କାର୍ଯ୍ୟ ଆଗେଇ ଯାଇଥିଲା ଏବଂ ମଣ୍ଡଳ ତାଙ୍କ ପାଇଁ ଏକ ଶକ୍ତସ୍ତମ୍ଭ ରୂପେ କାର୍ଯ୍ୟ କରିଥିଲା। ସଭ୍ୟପଦ ଗ୍ରହଣ କରିବା ମାତ୍ରକେ ଗୋପବନ୍ଧୁ କଟକଠାରେ ମଣ୍ଡଳର ଗୋଟିଏ ଶାଖା ଖୋଲି ସେଠାରେ ଗୋଟିଏ ପୁସ୍ତକାଗାର ଆରମ୍ଭ କଲେ। 'ସମାଜ' ଗୋଟିଏ ସ୍ୱାଧୀନ ସଂବାଦପତ୍ର ହୋଇଥିଲେ ହେଁ ସେ ଏହାକୁ ମଣ୍ଡଳର ମୁଖପତ୍ର ରୂପେ ବିବେଚନା କଲେ। ପୁଣି ମଣ୍ଡଳ ସାହାଯ୍ୟରେ ସେ ଓଡ଼ିଶା ସାହାଯ୍ୟ ପାଣ୍ଠି ଖୋଲି କଟକ ଓ ପୁରୀ ଜିଲ୍ଲାରେ ଚାରି ଗୋଟି ଧାନକୁଟା କେନ୍ଦ୍ର ପ୍ରତିଷ୍ଠା କଲେ। ମଣ୍ଡଳର କର୍ମୀମାନେ ପରେ ମହାତ୍ମାଜୀ ହରିଜନ ନାମକରଣ କରିଥିବା

ଅଛୁଆ ଜାତିମାନଙ୍କ ଉନ୍ନତି କରିବା ଓ କଲିକତାରେ ଓଡିଆ ଶ୍ରମିକମାନଙ୍କ ମଧ୍ୟରେ ସଂଗଠନ ଗଢ଼ିବା ଲାଗି କର୍ମୀ ନିଯୁକ୍ତ କରିଥିଲେ। ମଣ୍ଡଳର ଏପରି ବହୁମୁଖୀ କାର୍ଯ୍ୟ ପାଇଁ ଜଣେ ଲୋକର ସମୟ ଓ ଶକ୍ତି ଅକୁଳାଣ ହେବାରୁ ସେ ତାଙ୍କ ସହକର୍ମୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ମଣ୍ଡଳର ଦ୍ୱିତୀୟ ସଭ୍ୟ କରାଇଲେ। ମଣ୍ଡଳରେ ଗୋପବନ୍ଧୁଙ୍କର ଏପରି ସୁନାମ ଥିଲା ଯେ ତାଙ୍କ ମୃତ୍ୟୁର ଦୁଇ ବର୍ଷ ପୂର୍ବରୁ 1928 ମସିହା ଅପ୍ରେଲ ମାସରେ ଲାହୋରରେ ଅନୁଷ୍ଠିତ ମଣ୍ଡଳର ବାର୍ଷିକ ସଭାରେ ସେ ମଣ୍ଡଳର୍ ଉପ ସଭାପତି ନିର୍ବାଚିତ ହୋଇଥିଲେ। ତାଙ୍କ ପୂର୍ବରୁ ଅନ୍ୟ କୌଣସି ଓଡିଆ ଗୋଟିଏ ନିଖିଳ ଭାରତ ଅନୁଷ୍ଠାନରେ ଏପରି ଉଚ୍ଚ ପଦବୀ ପାଇ ନ ଥିଲେ।

ମଣ୍ଡଳରେ ଗୋପବନ୍ଧୁ ଓ ଲାଲାଜୀ ସହକର୍ମୀ ହେବାରୁ ସେମାନଙ୍କ ମଧ୍ୟରେ ଥିବା ପରସ୍ପର ପ୍ରଶଂସା ଭାବ ଭକ୍ତିରେ ପରିଣତ ହୋଇଗଲା। ଏହା ଗୋପବନ୍ଧୁ ତାଙ୍କ ଜୀବନର ଶେଷ ବର୍ଷରେ ଲାଲାଜୀଙ୍କୁ ଲେଖିଥିବା ଗୋଟିଏ ଚିଠିରୁ ପ୍ରମାଣିତ ହୁଏ। 1927 ଡିସେମ୍ବର 23 ତାରିଖ ପତ୍ରରେ ଗୋପବନ୍ଧୁ ଲେଖିଥିଲେ,

"ମୋ ଭାଇନାଙ୍କ ମୃତ୍ୟୁରେ ଆପଣଙ୍କ ଶୋକବାର୍ତ୍ତା ପାଇଛି। ଆପଣ ଲେଖିଛନ୍ତି, ମୋ କାର୍ଯ୍ୟାବଳୀର ବିବରଣୀ ସଂବାଦପତ୍ରରେ ପ୍ରକାଶିତ ହେବା ଉଚିତ, କିନ୍ତୁ ପ୍ରଚାର କରାଇବା ମୋ ପ୍ରକୃତି ବିରୁଦ୍ଧ। ଦେଶରେ ନାମ ଓ ଖ୍ୟାତି ଅର୍ଜନ କରିବାଲାଗି ମୋର ଆଦୌ ଇଚ୍ଛା ନାହିଁ। ମୋ ଶକ୍ତି ମୁତାବକ ମୁଁ ଯେ କୌଣସି କାମ ବା ସେବା କରିବାକୁ ପ୍ରସ୍ତୁତ। ଲୋକେ ଏ କଥା ନ ଜାଣିଲେ କ୍ଷତି କଣ? ମୁଁ ନିଜକୁ ଲୋକଙ୍କ ଆଜୀବନ ସେବକ ରୂପେ ବିବେଚନା କରେ ଏବଂ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖି ମୁଁ ମୋ ବିଚାର ଅନୁସାରେ ମୋ ଲୋକଙ୍କ ସେବା କରିଛି। ଆପଣଙ୍କ ସହଯୋଗ ପାଇଲେ ମୁଁ ଭଗବାନ ଓ ଜନତାର ସେବା କରିବାକୁ ସମର୍ଥ ହେବି ବୋଲି ଭାବି ମଣ୍ଡଳରେ ଯୋଗ ଦେଇଛି, ଯେ କୌଣସି ସାଧାରଣ କର୍ମୀ ବିଚାରିବା ଉଚିତ ଯେ ତାଙ୍କର ସମସ୍ତ ସମୟ ଓ ଚିନ୍ତା, ଶକ୍ତି ଓ ସଂପତ୍ତି ଏବଂ ମାନସିକ ସାମର୍ଥ୍ୟ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ। ସାଧାରଣ କାର୍ଯ୍ୟରେ ଅବହେଳା ଚୌର୍ଯ୍ୟବୃତ୍ତି ସହିତ ସମାନ; ତେଣୁ ନିନ୍ଦନୀୟ। ଆପଣ ଏବର ବନ୍ୟା ବିଷୟ ଶୁଣିଥିବେ। ଗୋଟିଏ ବନ୍ୟା ଅନୁସନ୍ଧାନ କମିଟି ନିଯୁକ୍ତ ହୋଇ ଥିବାରୁ ମୁଁ ସେ ସଂକ୍ରାନ୍ତରେ କାଗଜପତ୍ର ସଜାଡିବା ଓ ବିଭିନ୍ନ ସ୍ଥାନର ଲୋକଙ୍କୁ ପରାମର୍ଶ ଦେବା କାର୍ଯ୍ୟରେ ବ୍ୟସ୍ତ ଅଛି।"

ମୃତ୍ୟୁର ମାସକ ଆଗରୁ ଗୋପବନ୍ଧୁ ଲାଲାଜୀଙ୍କୁ ଅନ୍ୟ ଏକ ପତ୍ରରେ ଲେଖିଥିଲେ–
"ଆପଣ ଦକ୍ଷିଣ ଭାରତ ଗସ୍ତ ସାରି ଲାହୋରକୁ ଫେରି ଆସିଥିବେ ବୋଲି ମୁଁ ଆଶା କରୁଛି। ଗତ ତିନି ସପ୍ତାହ ହେଲା ମୁଁ ଜ୍ୱର ଓ ଶର୍ଦ୍ଦିରେ ଶଯ୍ୟାଶାୟୀ। ଲାହୋରରୁ ଫେରିବା ବାଟରେ ଗାଡ଼ିରେ ଜ୍ୱର ଆରମ୍ଭ ହେଲା। ମୁଁ ଜବଲପୁର ଠାରୁ ଆପଣଙ୍କ ପାଖକୁ ଗୋଟିଏ ତାରବାର୍ତ୍ତା ପଠାଇଲି; ମୁଁ ଜାଣେନା, ଆପଣ

ତାଙ୍କୁ ପାଇଲେ କି ନାହିଁ। ମୋର ଆଉ ସେ ପୁରୁଣା ସ୍ୱାସ୍ଥ୍ୟ ଓ ଉତ୍ସାହ ନାହିଁ; ମୋତେ ମଝିରେ ମଝିରେ ଜ୍ୱର ହେଉଛି ଏବଂ ବେଳେ ବେଳେ ଛାତି ଓ ମେରୁହାଡ ବିନ୍ଧୁଛି। ସଂପୂର୍ଣ୍ଣ ବିଶ୍ରାମ ନେବାକୁ ଡାକ୍ତର ପରାମର୍ଶ ଦେଲେ, କିନ୍ତୁ ତାହା କଣ ମୋ ପକ୍ଷରେ ସମ୍ଭବ? ମୋତେ ଏତେ କଥା ଭାବିବାକୁ ପଡୁଛି। ଅବଶ୍ୟ ବେମାର ପଡିବା ଦିନରୁ ମୁଁ ଏଠାରେ ରହୁଛି। ମୁଁ ଏଣେ ତେଣେ ବୁଲି ପାରୁ ନାହିଁ। ମୋ ହାତରେ ଥିବା କାମ କଥା ଭୁଲିବି କିପରି? ଖୁବ୍ ଶୀଘ୍ର ଏଠାକୁ ସାଇମନ କମିଶନ ଆସୁଛନ୍ତି। ମୋତେ ବିଭିନ୍ନ ସ୍ଥାନରେ ପ୍ରଚାର କରିବାକୁ ହେବ ଏବଂ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଭାବରେ ଏଇଟା ମୋର କର୍ତ୍ତବ୍ୟ କିନ୍ତୁ ମୁଁ ଏତେ ଦୁର୍ବଳ ହୋଇ ଯାଇଛି ଯେ ଯାଇ ଆସି ପାରୁ ନାହିଁ; ତେଣୁ ବେଳେ ବେଳେ ମନେ ହେଉଛି, ଏ ଦାୟିତ୍ୱ ନେବାକୁ ମନା କରିଦେବି। ଗତ ବନ୍ୟାରେ ଭାଙ୍ଗି ପଡିଥିବା ଲୋକଙ୍କ ଘରଗୁଡିକର ମରାମତି କାମ ଚାଲିଛି। ଏ କାମ ସରିଲେ କଲିକତାର ଓଡିଆ ଶ୍ରମିକମାନଙ୍କ ମଧ୍ୟରେ କାମ କରିବାକୁ ମୁଁ ଲିଙ୍ଗରାଜ ବାବୁଙ୍କୁ ପଠାଇ ଦେବି। କଲିକତାରୁ କେତେ ଜଣ ଓଡିଆ ଶ୍ରମିକ ମୋତେ ଆସି ଦେଖା କରିଥିଲେ। ଆପଣ ଜାଣନ୍ତି, ଦରିଦ୍ର ଓ ପଦଦଳିତ ଲୋକଙ୍କ ସେବା କରିବା ଆମର କର୍ତ୍ତବ୍ୟ। ଏହି ଶୋଷିତ ଲୋକମାନେ ହେଉଛନ୍ତି, ଜାତିର ମେରୁଦଣ୍ଡ। ଆମେ ଯେତେବେଳେ ସେମାନଙ୍କ ସେବକ, ମୃତ୍ୟୁ ପର୍ଯ୍ୟନ୍ତ ସେବା କରିବା ଆମର କର୍ତ୍ତବ୍ୟ ନୁହେଁ କି?''

ଲୋକ ସେବକ ମଣ୍ଡଳ ବିଷୟରେ ଗୋପବନ୍ଧୁ ଓ ଲାଲାଜୀଙ୍କ ମଧ୍ୟରେ ଘନ ଘନ ପତ୍ର ବିନିମୟ ଚାଲିଥିଲା। ମୃତ୍ୟୁର ନଅ ଦିନ ଆଗରୁ ଗୋପବନ୍ଧୁ ଲାଲାଜୀଙ୍କୁ ଏକ୍ ପତ୍ରରେ ଲେଖିଥିଲେ,

''ଆପଣଙ୍କ 'ଦୁଃଖିନୀ ଭାରତ ମାତା' ପୁସ୍ତକରେ ଛପାଇବେ ବୋଲି ମୋର ଗୋଟିଏ ଆଲୋକ ଚିତ୍ର ମାଗିଛନ୍ତି। ମୁଁ ଆପଣଙ୍କ ପତ୍ର ପାଇଛି କିନ୍ତୁ ଦୁଃଖର ସହିତ ଜଣାଉଛି ଯେ ମୋର କୌଣସି ଆଲୋକ ଚିତ୍ର ନ ଥିବାରୁ ମୁଁ ପଠାଇ ପାରୁନାହିଁ। ଅନେକ ଲୋକ କ୍ୟାଲେଣ୍ଡରରେ ଛପାଇବା ଲାଗି ଆଲୋକ ଚିତ୍ର ମାଗନ୍ତି, କିନ୍ତୁ ମୁଁ ତାଙ୍କୁ ଦିଏ ନାହିଁ କିମ୍ବା ଦେଇ ପାରିବି ନାହିଁ। ଆପଣଙ୍କ ଅନୁରୋଧ ରକ୍ଷା କରି ପାରୁ ନ ଥିବାରୁ କ୍ଷମା ମାଗି ନେଉଛି।''

# ପୁଣି ବନ୍ୟା ସାହାଯ୍ୟ

ଭାରତ ପାଇଁ 1927 ମସିହା ଗୋଟିଏ ଖରାପ ବର୍ଷ ଥିଲା । ଏ ବର୍ଷ ପଶ୍ଚିମ ଓ ପୂର୍ବ ଉପକୂଳରେ ଥିବା ଅଞ୍ଚଳ ଅଦୃଷ୍ଟପୂର୍ବ ବନ୍ୟା ବିପ୍ୟାତର ସମ୍ମୁଖୀନ ହୋଇଥିଲା । 1927 ମସିହା ଜୁଲାଇ 27 ତାରିଖରୁ ଅବିଶ୍ରାନ୍ତ ଭାବରେ ତିନି ଦିନ କାଳ ମୂଷଳ ଧାରାରେ ବର୍ଷା ହେଲା । ଭାରତବର୍ଷର ପ୍ରାୟ ସବୁ ନଗରରେ ବନ୍ୟା ହେଲା ଏବଂ ବଲ୍ଲଭଭାଇଙ୍କ ଗୁଜରାଟ ଓ ଗୋପବନ୍ଧୁଙ୍କ ଓଡିଶା ସବୁ ଠାରୁ ବେଶି କ୍ଷତିଗ୍ରସ୍ତ ହୋଇଥିଲେ । ଏପରି ଅବିଶ୍ରାନ୍ତ ବର୍ଷା ହେଲା ଯେ ପ୍ରଦେଶର ବିଭିନ୍ନ ସ୍ଥାନରୁ ସଂବାଦ ମଧ୍ୟ ସଂଗ୍ରହ କରି ହେଲା ନାହିଁ। ପ୍ରଳୟ ଆସି ପହଞ୍ଚିଯିବା ପରି ମନେ ହେଲା । ଜୁଲାଇ 29 ତାରିଖ ଦିନ ପୁରୀକୁ ହାଓଡ଼ାରୁ କୌଣସି ରେଳଗାଡି ଆସିଲା ନାହିଁ; କଟକ ଷ୍ଟେସନରୁ ସଂବାଦ ନେବାରେ ଜଣା ପଡିଲା ଯେ ମଞ୍ଜୁରୀ ରୋଡ ଓ ବୈତରଣୀ ରୋଡ ଷ୍ଟେସନ ମଝିରେ ରେଳପଥ ଭାସି ଯାଇ ଥିବାରୁ କୌଣସି ଗାଡି ଆସି ପାରିଲା ନାହିଁ କିଂବା ଆସି ପାରନ୍ତା ନାହିଁ। ସରକାରୀ କର୍ମଚାରୀମାନେ କ୍ଷେତ୍ର ଉପରକୁ ଯାଇଥିଲେ କିନ୍ତୁ ସେମାନେ ଚାରିଆଡ଼େ ବିରାଟ ଜଳରାଶି ବ୍ୟତୀତ ଆଉ କିଛି ଦେଖି ପାରିଲେ ନାହିଁ। ଗୋପବନ୍ଧୁ ସେତେବେଳେ ସତ୍ୟବାଦୀରେ ଥିଲେ ଏବଂ ବୈତରଣୀ ନଦୀର ପ୍ରଳୟଂକରୀ ବନ୍ୟା ବିଷୟରେ ଗୋଟିଏ ତାରବାର୍ତ୍ତା ପାଇଲେ । ସେତେବେଳେ ଗୋପବନ୍ଧୁ ଯା'ଆସ କରିବା ଅବସ୍ଥାରେ ନ ଥିଲେ ବୋଲି ସେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ନେତୃତ୍ୱରେ କ୍ଷତିଗ୍ରସ୍ତ ଅଞ୍ଚଳକୁ ଗୋଟିଏ ସ୍ୱେଚ୍ଛା ସେବକ ଦଳ ପଠାଇଲେ । ଅସଂଖ୍ୟ ଗ୍ରାମ ପାଣିରେ ବୁଡି ଥିଲା କିଂବା ଭାଙ୍ଗି ପଡିଥିଲା । ଶତଶତ ଲୋକ ଓ ଗୃହପାଳିତ ପଶୁ ଭାସି ଯାଇଥିଲେ । ଲୋକେ ଭୀତତ୍ରସ୍ତ ହୋଇ ଚାଳ ଉପରେ ବା ଗଛ ଉପରେ ଆଶ୍ରା ନେଇଥିଲେ । ମଣିଷ ଓ ସାପ ପରସ୍ପର ଶତ୍ରୁ ହେଲେ ହେଁ ଏକ ଜାଗାରେ ଆଶ୍ରୟ ନେଇଥିଲେ । ଲୋକଙ୍କର ସର୍ବସ୍ୱ ଚାଲି ଯାଇଥିଲା, ଏପରି କି ମଧ୍ୟବିତ୍ତ ପରିବାରବର୍ଗ ମଧ୍ୟ ଅନାହାରରେ ଥିଲେ । ଯାଜପୁର ଓ ଭଦ୍ରକ ଅନୁବିଭାଗ ଦୁଇଟିରେ ନର୍କ ଭୂତଳକୁ ଓହ୍ଲାଇ ଆସିଥିଲା । 1925 ଓ 1926 ର ବନ୍ୟା କମ୍ ପ୍ରଳୟଙ୍କରୀ ନ ଥିଲା କିନ୍ତୁ 1927 ର ବନ୍ୟା ସମସ୍ତଙ୍କୁ ଟପି ଯାଇଥିଲା । ଅତି ନିକୁଛିଆ ହିସାବରେ କ୍ଷୟକ୍ଷତି ଅଟକଳ ଦଶ କୋଟି ଟଙ୍କାରୁ କମ ନ ଥିଲା ।

## କେନ୍ଦ୍ର ବିଧାନସଭା ବାର୍ତ୍ତା

ସେତିକି ବେଳେ ବଡଲାଟ ଲର୍ଡ ଇରଉଇନ ଓଡିଶା ଗସ୍ତରେ ଆସିବାର ଥିଲା, କିନ୍ତୁ ରେଳପଥ ଭାଙ୍ଗି ଯାଇ ଥିବାରୁ ତାଙ୍କ ସ୍ୱତନ୍ତ୍ର ରେଳଗାଡି ଆସି ପାରିଲା ନାହିଁ। ଗସ୍ତ ପରିବର୍ତ୍ତେ ସେ ବିହାର ଓ ଓଡିଶାର ଲାଟ ସାହେବଙ୍କ ପାଖକୁ ଗୋଟିଏ ତାରବାର୍ତ୍ତା ପଠାଇ ନିଜ ଗସ୍ତ ନିର୍ଘଣ୍ଟ ରଦ୍ଦ ହେବା ଖବର ଦେବା ସହିତ ବନ୍ୟା ପୀଡିତ ଲୋକମାନଙ୍କ ପ୍ରତି ସହାନୁଭୂତି ଜ୍ଞାପନ କରିଥିଲେ। ଓଡ଼ିଶା ବନ୍ୟାର ପ୍ରତିଧ୍ୱନି କେନ୍ଦ୍ର ବିଧାନ ସଭାକୁ ମଧ୍ୟ ଶୁଣାଯାଇ ଥିଲା ଏବଂ ଓଡିଶା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ କେନ୍ଦ୍ର ବିଧାନ ସଭା ଗ୍ରହଣ କରିଥିବା ନିମ୍ନଲିଖିତ ପ୍ରସ୍ତାବ ଜଣାଇ ଦିଆ ଯାଇଥିଲା:-

''ଗୁଜରାଟ, ଓଡିଶା ଓ ସିନ୍ଧୁ ପ୍ରଦେଶରେ ଅଭୂତପୂର୍ବ ବନ୍ୟାରେ କ୍ଷତିଗ୍ରସ୍ତ ହୋଇଥିବା ଲୋକମାନଙ୍କ ପ୍ରତି ଏହି ସଭା ସହାନୁଭୂତି ପ୍ରକାଶ କରୁଛି ଏବଂ ଏହା କ୍ଷତିଗ୍ରସ୍ତ ଲୋକଙ୍କୁ ଜଣାଇ ଦେବା ଲାଗି ଗୃହର ସଭାପତିଙ୍କୁ ଅନୁରୋଧ କରୁଛି। ସଭା ବିଶ୍ୱାସ କରୁଛି ଯେ ଦେଶର ସରକାର, ରାଜନ୍ୟମଣ୍ଡଳୀ ଓ ଜନସାଧାରଣ ଏହି ଦୁଃଖ ଅପନୋଦନ କରିବାରେ ଯଥାଶକ୍ତି ସାହାଯ୍ୟ କରିବେ।''

ଗୋପବନ୍ଧୁ ଉତ୍ତରରେ ଜଣାଇ ଥିଲେ,''କେନ୍ଦ୍ର ବିଧାନ ସଭାର ସହାନୁଭୂତି ସୂଚକ ବାର୍ତ୍ତା ଲାଗି ମୁଁ ଆପଣଙ୍କୁ ଧନ୍ୟବାଦ ଦେଉଛି। ଏହା ଲୋକଙ୍କୁ ସେମାନଙ୍କ ଦୁଃଖ ବେଳେ ସାନ୍ତ୍ୱନା ଦେବ। ଏଥି ପାଇଁ ସଭାକୁ ଲୋକଙ୍କ କୃତଜ୍ଞତା ଜଣାଇ ଦେବେ। ବନ୍ୟା ବିପ୍ରାତ ବିରୁଦ୍ଧରେ ଓଡିଶା ସ୍ଥାୟୀ ପ୍ରତିକାର ଦାବୀ କରୁଛି।''

## ବନ୍ୟା ସାହାଯ୍ୟ

1927 ମସିହା ଅଗଷ୍ଟ ବାର ତାରିଖ ଦିନ କଟକ ଟାଉନ ହଲରେ ଏକ ସାଧାରଣ ସଭା ହୋଇ ପଣ୍ଡିତ ଗୋପବନ୍ଧୁଙ୍କ ସଂପାଦକତ୍ୱରେ ଗୋଟିଏ ବନ୍ୟା ସାହାଯ୍ୟ କମିଟି ଗଠନ କରିବାକୁ ସ୍ଥିର ହେଲା। ସଂବାଦପତ୍ର ମାନଙ୍କରେ ନିବେଦନ ପ୍ରକାଶିତ ହେବାପରେ ଦେଶର ବିଭିନ୍ନ ପ୍ରାନ୍ତରୁ ବନ୍ୟା ସାହାଯ୍ୟ ପାଇଁ ଟଙ୍କାର ସୁଅ ଛୁଟିଲା ଏବଂ ଗୋପବନ୍ଧୁ ତାଙ୍କ ଅଦମ୍ୟ ଶକ୍ତି ଓ ବୁଦ୍ଧି ପ୍ରୟୋଗ କରି କ୍ଷତିଗ୍ରସ୍ତ ଅଞ୍ଚଳରେ ସାହାଯ୍ୟ ବଣ୍ଟନ କରିବା ଲାଗି ସ୍ୱେଚ୍ଛା-ସେବକ ଦଳ ଗଠନ କଲେ। ଗୋପବନ୍ଧୁ ନିଜେ ପାଦରେ ଚାଲି ଗାଁକୁ ଗାଁ ବୁଲିଲେ। ବିହାର ଓ ଓଡ଼ିଶା ବିଧାନ ପରିଷଦରେ ଓଡିଶାର ବନ୍ୟା ସଂବନ୍ଧରେ ଆଲୋଚନା ହୋଇ ଏଥି ପ୍ରତି ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ କରିବା ସଂଗେ ସଂଗେ ସାହାଯ୍ୟ ପାଇବାରେ ସାହାଯ୍ୟ କଲା। ପ୍ରଥମ କେତେଦିନ ପର୍ଯ୍ୟନ୍ତ ମାଗଣା ସାହାଯ୍ୟ ଦିଆ ଯାଇଥିଲା ଏବଂ ଦାତାମାନଙ୍କ ଠାରୁ ମିଳିଥିବା ଲୁଗା ଓ କମ୍ବଳ ଏବଂ ଡାକ୍ତରୀ ସାହାଯ୍ୟ ବଣ୍ଟନ କରା ଯାଇଥିଲା। ସାହାଯ୍ୟ ପ୍ରାପ୍ତ ଖାଦ୍ୟ ପଦାର୍ଥ ବଣ୍ଟନର ସୁବିଧା ଲାଗି ଶସ୍ୟ ଭଣ୍ଡାର ସ୍ଥାପିତ ହେଲା ଏବଂ ଅତିରିକ୍ତ ବ୍ୟବସ୍ଥା ରୂପେ ଧାନକୁଟା କେନ୍ଦ୍ର ଖୋଲା ହେଲା। ବନ୍ୟାରେ ଭାଙ୍ଗି ପଡ଼ିଥିବା ଘରଗୁଡ଼ିକ ପୂନର୍ବାର ତିଆରି କରିବା

ଲାଗି ଲୋକଙ୍କୁ ଟଙ୍କା ଦିଆ ଯାଇଥିଲା । ଦୁଃସ୍ଥ ସେବା କ୍ଷେତ୍ରରେ ଗୋପବନ୍ଧୁ ସର୍ବଦା ପୁରୋଭାଗରେ ଥିଲେ ଏବଂ 1927 ର ବନ୍ୟା ତାଙ୍କ ମାନବିକତାର ସର୍ବଶ୍ରେଷ୍ଠ ପ୍ରମାଣ ଯୋଗାଇ ଥିଲା ।

ଏହି ସବୁ ସାହାଯ୍ୟ ଫଳରେ ଲୋକଙ୍କ ଦୁଃଖ ସାମୟିକ ଭାବରେ ଦୂର ହେଲା ସିନା, କିନ୍ତୁ ବନ୍ୟା ବିପ୍ଳାତର ପୌନପୌନିକ ଘଟଣାକୁ ରୋକିବା ଲାଗି ସ୍ଥାୟୀ ବ୍ୟବସ୍ଥା ହେବା ଉଚିତ ନୁହେଁ କି? କଟକରେ ଗୋଟିଏ ନିଖିଳ ଉତ୍କଳ ବନ୍ୟା ସମ୍ମିଳନୀ ଆହୂତ ହେଲା ଏବଂ ପରେ ପରେ ପ୍ରତି ଜିଲ୍ଲାରେ ଓ ପ୍ରତି ଥାନାରେ ଏପରି ସମ୍ମିଳନୀ ହେଲା । ଗୋପବନ୍ଧୁ ପ୍ରାୟ ପ୍ରତ୍ୟେକ ସମ୍ମିଳନୀରେ ଯୋଗଦେଇ ବନ୍ୟା ନିରାକରଣ ଲାଗି ଉପଯୁକ୍ତ ବ୍ୟବସ୍ଥା ବିଷୟରେ ଆଲୋଚନା କରିବା ସଂଗେ ସଂଗେ ବନ୍ୟାର କ୍ଷୟକ୍ଷତି ସମ୍ବନ୍ଧରେ ବିଶ୍ୱାସଯୋଗ୍ୟ ତଥ୍ୟ ଓ ପରିସଂଖ୍ୟାନ ସଂଗ୍ରହ କରିଥିଲେ । ପ୍ରଦେଶ ସାରା ବନ୍ୟା ନିରୋଧ କମିଟି ଗଠିତ ହେଲା ଓ ତାଙ୍କ ଅନୁରୋଧରେ ଭାରତର ବିଶିଷ୍ଟ ନେତାମାନେ ଲୋକଙ୍କ ଦୁଃଖ ସ୍ୱଚକ୍ଷୁରେ ଦେଖିବା ଲାଗି ଓଡ଼ିଶା ଗସ୍ତରେ ଆସିଲେ । ଏପରି ବ୍ୟବସ୍ଥାଗୁଡ଼ିକ ଫଳରେ ବନ୍ୟା ନିରାକରଣ ଲାଗି ସ୍ଥାୟୀ ପ୍ରତିକାର ବିଷୟରେ ସୁପାରିଶ କରିବା ଲାଗି ବିହାର ଓ ଓଡ଼ିଶା ସରକାର ଗୋଟିଏ ବନ୍ୟା ବିଶେଷଜ୍ଞ କମିଟି ଗଠନ କରିବାକୁ ବାଧ୍ୟ ହୋଇଥିଲେ । ଗୋପବନ୍ଧୁ ନିଜେ ଏହି କମିଟି ଆଗରେ ସାକ୍ଷୀ ଦେଇଥିଲେ ଏବଂ ଓଡ଼ିଶାର ବାସ୍ତବ ପରିସ୍ଥିତି ସଂବନ୍ଧରେ ତାଙ୍କ ଜ୍ଞାନ ଏତେ ବିଶଦ ଓ ତଥ୍ୟ ମୂଳକ ଥିବାର ଦେଖି କମିଟି ଚମତ୍କୃତ ହୋଇଥିଲେ । ଗୋପବନ୍ଧୁ ତାଙ୍କ ଜୀବନର ଅବଶିଷ୍ଟ ଦଶ ମାସ ସମୟ ଏହି ଗୋଟିଏ କାର୍ଯ୍ୟରେ କଟାଇ ଥିଲେ ଏବଂ କମିଟି ତାଙ୍କ ବିବରଣୀ ଦେବା ପୂର୍ବରୁ ଗୋପବନ୍ଧୁ ଇହଲୀଳା ସାଙ୍ଗ କରିଥିଲେ ।

### ଭାଇନାଙ୍କ ମୃତ୍ୟୁ

ଏହିପରି ଆବେଗ ମୂଳକ ଅସହ୍ୟ ଯନ୍ତ୍ରଣା ମଧ୍ୟରେ ଭାଗ୍ୟ ତାଙ୍କ ପାଇଁ ଏକ ଦାରୁଣ ଆଘାତ ରଖିଥିଲା । ଯେଉଁ ଜ୍ୟେଷ୍ଠ ଭ୍ରାତା ବା ଭାଇନା ନାରାୟଣ ଦାଶ ସର୍ବବିଧ ଚିନ୍ତାରୁ ମୁକ୍ତ କରି ଜନ ସେବା କରିବା ଲାଗି ତାଙ୍କୁ ପୂର୍ଣ୍ଣ ଅବସର ଦେଇଥିଲେ, ତାଙ୍କର 1927 ମସିହା ନଭେମ୍ବର 22 ତାରିଖ ଦିନ ପରଲୋକ ହୋଇଗଲା । ଏହି ଦୁଃସଂବାଦ ତାଙ୍କ ପାଇଁ ଅସହ୍ୟ ଥିଲା; ଏଣିକି ପାରିବାରିକ ସମସ୍ୟାରେ ଜଡ଼ିତ ନ ହେବା ତାଙ୍କ ପକ୍ଷରେ ଅସମ୍ଭବ ହୋଇଗଲା । ଏଣିକି ସେ ସାଧାରଣ କାର୍ଯ୍ୟପାଇଁ କଟକରେ ସବୁବେଳେ ରହିବା ସମ୍ଭବପର ନୁହେଁ ବୋଲି ସ୍ଥିର କଲେ । ଏଣିକି ସେ କିଛି ସମୟ ତାଙ୍କ ପ୍ରିୟ ସ୍ଥାନ ସାକ୍ଷୀଗୋପାଳରେ ଓ ଆଉ କେତେ ଦିନ ପୈତୃକ ସଂପତ୍ତି ବୁଝାସୁଝା କରିବା ଲାଗି ନିଜ ଗାଁରେ କଟାଇବାକୁ ପଡ଼ିବ । ସେତେବେଳେ ସତ୍ୟବାଦୀ ସ୍କୁଲ ଗୋଟିଏ ମାମୁଲି ଶିକ୍ଷାନୁଷ୍ଠାନ ନ ଥିଲା, ଦଳ ଦଳ ଯୁବକଙ୍କୁ ଜନସେବା ବିଷୟରେ ତାଲିମ ଦେବା ଲାଗି ଏହା ଗୋଟିଏ ବ୍ରହ୍ମଚର୍ଯ୍ୟାଶ୍ରମରେ ପରିଣତ ହୋଇଥିଲା ।

# ଜନସେବାର ଶେଷ ପର୍ଯ୍ୟାୟ

ଗୋପବନ୍ଧୁ ଆନ୍ତରିକତାର ଅଭାବକୁ ଘୃଣା କରୁଥିଲେ। ସେ ଯେଉଁ କାମ ହାତକୁ ନେଉଥିଲେ, ତାହାକୁ ଉତ୍ସାହର ସହିତ ସଂପାଦନ କରୁଥିଲେ। ସେ ଲୋକ ସେବକ ମଣ୍ଡଳର ସଭ୍ୟ ହେବା ମାତ୍ରକେ ଜନସେବା ଉଦ୍ଦେଶ୍ୟରେ ଏହି ଅନୁଷ୍ଠାନକୁ ବ୍ୟବହାର କରିବାକୁ ଆରମ୍ଭ କଲେ। ସେ ତାଙ୍କ ଯୋଜନାରେ ସମାଜ ସଂସ୍କାରକୁ ମୁଖ୍ୟ ସ୍ଥାନ ଦେଇଥିଲେ। ପୁରୀ ଜିଲ୍ଲାର ଜଣେ ବ୍ରାହ୍ମଣ ହିସାବରେ ସେ ଜାଣିଥିଲେ ଯେ ବିଧବା ବିବାହ ପ୍ରଥା ନ ଥିବାରୁ ଅନେକ ବ୍ରାହ୍ମଣ ଯୁବତୀ ଭରାଯୌବନରେ ସ୍ୱାମୀଙ୍କୁ ହରାଇ ଜୀବନ ସାରା ଅଶେଷ ଯନ୍ତ୍ରଣା ଭୋଗ କରୁଥିଲେ। ସେମାନେ ଦେଶ ପାଇଁ ଏକ ଅଭିଶାପ ପରି ଥିଲେ। ସେମାନଙ୍କୁ ନିଷ୍ଠୁର କଟକଣା ଭିତରେ ଜୀବନ ବିତାଇବାକୁ ପଡୁଥିଲା; ତାପରେ ସେ ନିଜ ପିତାମାତା ଓ ଅଭିଭାବକଙ୍କ ଉପରେ ଏକ ବୋଝ ପରି ରହୁଥିଲେ। ପୁରୀ ଏହି ବିଧବାମାନଙ୍କ କେନ୍ଦ୍ରସ୍ଥଳ ଥିଲା, କାରଣ ଦେଶର ସବୁ ପ୍ରାନ୍ତରୁ ଓ ପ୍ରଦେଶର ପ୍ରତ୍ୟେକ ଅଞ୍ଚଳରୁ ବିଧବାମାନେ ଆସି ଏହି ତୀର୍ଥରେ ରୁଣ୍ଡ ହେଉଥିଲେ। କେତେଜଣ ବିଧବା ଓଡ଼ିଶା ଭିତରେ ଓ ବାହାରେ ବେଶ୍ୟାବୃତ୍ତି କରୁଥିଲେ ଏବଂ ଏହା ଆମ ସାମାଜିକ ଜୀବନ ପ୍ରତି ଏକ ଶାଶ୍ୱତ କଳଙ୍କ ଥିଲା। ଗୋପବନ୍ଧୁ ସେମାନଙ୍କୁ ସାହାଯ୍ୟ କରିବା ଲାଗି ଦ୍ୱିବିଧ କାର୍ଯ୍ୟକ୍ରମ ହାତକୁ ନେଇଥିଲେ। ସେ ବହୁ ସଂଖ୍ୟକ ଶିକ୍ଷିତ ଯୁବକଙ୍କୁ ବିଧବା ବିବାହ କରିବା ଲାଗି ପ୍ରବର୍ତ୍ତାଇ ଥିଲେ, କିନ୍ତୁ ଏହି ଉଦ୍ୟମ ବିଶେଷ ଫଳପ୍ରଦ ହୋଇ ନ ଥିଲା। ତେଣୁ ସେ ସେମାନଙ୍କ ପୁନଃସଂସ୍ଥାନ କରିବାକୁ ମନସ୍ଥ କରି 1926 ରେ ପୁରୀ ଠାରେ "ଜଗନ୍ନାଥ ବିଧବାଶ୍ରମ" ପ୍ରତିଷ୍ଠା କଲେ। ଏହି ଆଶ୍ରମରେ ବିଧବାମାନଙ୍କୁ ହସ୍ତକର୍ମ ଶିକ୍ଷା ଦିଆଗଲା; ସେମାନେ ନିଷ୍ପାପର ଜୀବନ ଯାପନ କରିବାକୁ ଶିଖିଲେ ଏବଂ ଜାତୀୟ କାର୍ଯ୍ୟରେ ସ୍ୱେଚ୍ଛା ସେବକ ରୂପେ କାମ କଲେ। ଏହି ଆଶ୍ରମରେ ନାମ ଲେଖାଇବା ବେଳେ ଜାତି ଓ ସଂପ୍ରଦାୟ ଭେଦ ରଖାଯାଇ ନ ଥିଲା।

1928 ଅପ୍ରେଲ ମାସରେ ଲାହୋରରେ ଲୋକ ସେବକ ମଣ୍ଡଳର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା। ଏଥିରେ ଯୋଗ ଦେବା ପାଇଁ ପଣ୍ଡିତ ଗୋପବନ୍ଧୁ ଦାସ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ଅପ୍ରେଲ 12 ତାରିଖ ଦିନ ଓଡ଼ିଶାରୁ ଲାହୋର

ଅଭିମୁଖେ ଯାତ୍ରା କଲେ। ସେମାନେ ଦିଲ୍ଲୀ ଠାରେ ଲାଲାଜୀଙ୍କୁ ଭେଟି ସମସ୍ତେ ଏକାଠି ଗଲେ ଓ 22 ତାରିଖ ଦିନ ଲାହୋରରେ ପହଞ୍ଚିଲେ। ଲାହୋରରୁ ଫେରିବା ଦିନ ସେ ସାମାନ୍ୟ ଅସୁସ୍ଥ ଥିଲେ ଏବଂ 29 ତାରିଖ ହାଓଡ଼ାରେ ପହଞ୍ଚିବା ବେଳେ ତାଙ୍କ ଅସୁସ୍ଥତା ବଢ଼ି ଯାଇଥିଲା। ସେ ଷ୍ଟେସନ ପ୍ଲାଟଫର୍ମ ଉପରେ ଦିନ ସାରା ବିଶ୍ରାମ ନେଲେ ଓ ପଣ୍ଡିତ ଲିଙ୍ଗରାଜ ତାଙ୍କ ସେବା କଲେ। ତାଙ୍କୁ ସାକ୍ଷୀଗୋପାଳ ନେଇଯିବା ଲାଗି ଲିଙ୍ଗରାଜ ମନସ୍ଥ କରିଥିଲେ କିନ୍ତୁ ସାଧାରଣ କାର୍ଯ୍ୟରେ ତାଙ୍କର ଏପରି ଉତ୍କଣ୍ଠା ଥିଲା ଯେ ତାଙ୍କ ଚେତନା ଫେରି ଆସିବା ମାତ୍ରକେ ସେ ବନ୍ୟାରେ ଭାଙ୍ଗି ପଡ଼ିଥିବା ଘରଗୁଡ଼ିକର ମରାମତି କାର୍ଯ୍ୟ ତଦାରଖ କରିବା ଉଦ୍ଦେଶ୍ୟରେ ବାଲେଶ୍ୱରରେ ଓହ୍ଲାଇବାକୁ ଜିଦ୍ କଲେ। ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଦେଖି ଲିଙ୍ଗରାଜ ଏହା କରିବାକୁ ସାହସ କରି ନ ଥିଲେ, ତେଣୁ ସେ ଗୋପବନ୍ଧୁଙ୍କୁ ବାଧ କରି ସାଙ୍ଗରେ ନେଇ 30 ତାରିଖ ସକାଳେ ସାକ୍ଷୀଗୋପାଳରେ ପହଞ୍ଚିଲେ। ଏହା ଟାଇଫଏଡ୍ ଜ୍ୱର ଥିଲା ଓ ସେ ସୁସ୍ଥ ହେବା ଲାଗି ପଚିଶ ଦିନ ସମୟ ଲାଗିଥିଲା।

କଲିକତାର ଶ୍ରମିକମାନେ ଗୋପବନ୍ଧୁଙ୍କୁ ସେଠାକୁ ଯିବା ଲାଗି ନିମନ୍ତ୍ରଣ କରିବାରୁ ସେ 1928 ଜୁନ ଦୁଇ ତାରିଖ ଦିନ କଲିକତା ଗଲେ। ବହୁସଂଖ୍ୟକ ଓଡ଼ିଆ ଶ୍ରମିକ ହାଓଡ଼ା ଷ୍ଟେସନରେ ତାଙ୍କୁ ରାଜକୀୟ ଅଭ୍ୟର୍ଥନା ଦେଇଥିଲେ। ସେମାନେ ଗୋପବନ୍ଧୁଙ୍କୁ ସେଠାରେ ଜଣାଇ ଥିଲେ, ବଡ଼ ବଜାରରେ ଶ୍ରମିକମାନେ ଗୋଟିଏ ଶ୍ରମିକ ସଂଗଠନ ଗଢ଼ିଛନ୍ତି ଓ ସେ ଏହାର କାର୍ଯ୍ୟ ଦେଖିବାକୁ ଅନୁରୋଧ କରିଛନ୍ତି। କଲିକତାରେ ଗୋଟିଏ ପ୍ରଶସ୍ତ ସ୍ଥାନରେ ତାଙ୍କୁ ରଖିବା ଲାଗି ବ୍ୟବସ୍ଥା ହୋଇଥିଲା, କିନ୍ତୁ ସେ ସେଠାରେ ରହିବାକୁ ଅସ୍ୱୀକାର କରି ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟ୍‌ରେ ଥିବା ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ଶ୍ରମିକମାନଙ୍କ ସହିତ ରହିବାକୁ ସ୍ଥିର କଲେ। ଏହି ଘରର ପ୍ରତ୍ୟେକ କୋଠରୀର ଲମ୍ବ ସାତ ଫୁଟ ଓ ଓସାର ସାତ ଫୁଟ ଏବଂ ପ୍ରତ୍ୟେକ କୋଠରୀରେ ପ୍ରାୟ ପନ୍ଦର ଜଣ ରହୁଥିଲେ। ଏହି ଗସ୍ତ ବେଳେ ସେ କଲିକତାର ଓଡ଼ିଆ ସଂଗଠନକୁ ସୁଦୃଢ଼ ଭିତ୍ତିରେ ସ୍ଥାପନ କରି ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ଏହି ଆନ୍ଦୋଳନ ଦାୟିତ୍ୱରେ ରଖିଲେ।

ସେ ଜୁନ୍ 11 ତାରିଖରେ ସତ୍ୟବାଦୀକୁ ଫେରି ଆସିବା ପରେ ତାଙ୍କୁ ଜ୍ୱର ଆରମ୍ଭ ହେଲା। ତା ପରଦିନ ଅର୍ଥାତ୍ ଜୁନ୍ ବାର ତାରିଖରେ ବର୍ଦ୍ଦୋଲି ସତ୍ୟାଗ୍ରହରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ବିଜୟ ଉପଲକ୍ଷେ ଦେଶ ସାରା ଉତ୍ସବ ପାଳିତ ହେଉଥିଲା। ଏହି ଉପଲକ୍ଷେ ପୁରୀରେ ଗୋଟିଏ ବିରାଟ ସାଧାରଣ ସଭା ସହିତ ଦିନ ସାରା ସେ ଅନେକ ସଭାରେ ଭାଷଣ ଦେବାର ଥିଲା କିନ୍ତୁ ତାଙ୍କୁ ଏପରି ଜ୍ୱର ହେଲା ଯେ ସେ ପୁରୀ ଯାଇ ପାରିଲେ ନାହିଁ। ତାଙ୍କୁ ଭାରି ଦୁର୍ବଳ ଲାଗୁଥିଲା। ତାଙ୍କ ଅସୁସ୍ଥତା ସଂବାଦ ପ୍ରଚାରିତ ହେବା ମାତ୍ରକେ ବିଭିନ୍ନ ସ୍ଥାନର ବହୁକର୍ମୀ ତାଙ୍କୁ ଦେଖିବାକୁ ଆସିଲେ। ସେ ସେମାନଙ୍କୁ ଦେଖି ବିକଳରେ କାନ୍ଦି ପକାଇଲେ। ଠିକ୍ ସେତିକି ବେଳେ ସତ୍ୟବାଦୀ ଡାକ୍ତରଖାନାର ଭାରପ୍ରାପ୍ତ ଡାକ୍ତର ତାଙ୍କୁ ଦେଖିବାକୁ

ଆସିଲେ। ସେ ଆଗରୁ ଜାଣିଥିବା ପରି ଡାକ୍ତରଙ୍କୁ ପଚାରିଲେ, "ଡାକ୍ତର, ମନେ ରଖନ୍ତୁ, ମୁଁ ବେମାର ପଡ଼ି କେବେ କାନ୍ଦି ନ ଥିଲି। ଆଜି ମୋ ଆଖିକୁ ଲୁହ ଆସିଲା କାହିଁକି ? ଆପଣ ଜାଣନ୍ତି, ମୁଁ ଜଣେ ଛୋଟକାଟର କବି। ମୋର ଦି'ଧାଡ଼ି କବିତା ମନେ ପଡୁଛି, ଯାହାର ଅର୍ଥ ହେଉଛି ଜୀବନ ସାଗରରେ ମୁଁ କେତେଦିନ ଏହି ଭଗ୍ନତରୀକୁ ଚଳାଇ ପାରିବି ? ଟିକିଏ ଦେଖନ୍ତୁ, ମୋ ହୃଦୟ ଦବି ଯିବା ପରି ମନେ ହେଉଛି।" ସେଠାରେ ଉପସ୍ଥିତ ଥିବା ଲୋକେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, ଏହା କେବଳ ମ୍ୟାଲେରିଆ, ଏଥିରେ ବିଚଳିତ ହେବାର କାରଣ ନାହିଁ।

ବେମାର ପଡ଼ିବା ଅବସ୍ଥାରେ ମଧ୍ୟ ଜଣେ ସାଧାରଣ କର୍ମୀର ଅବସର ନ ଥାଏ। ପାରିକୁଦ ବିଷୟରେ ଗୋଟିଏ ସଂବାଦ ପ୍ରକାଶିତ ହୋଇ ଥିବାରୁ ସଂପାଦକ ହିସାବରେ ତାଙ୍କ ବିରୁଦ୍ଧରେ ଏବଂ ମୁଦ୍ରାକର ଓ ପ୍ରକାଶକ ହିସାବରେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ବିରୁଦ୍ଧରେ ଗୋଟିଏ ମାନହାନି ମୋକଦ୍ଦମା ଦାଏର ହୋଇଥିବା ସଂବାଦ ସେ ରୋଗ ଶଯ୍ୟାରେ ପଡ଼ିଥିବା ବେଳେ ପାଇଲେ। ସେତେବେଳେ ତାଙ୍କ ମାନସିକ ଅବସ୍ଥାର ଏକ ଚିତ୍ର ସେ 1928 ମସିହା ଜୁନ 11 ତାରିଖରେ 'ସମାଜ' ଅଫିସ୍‌ର ଜଣେ କର୍ମୀଙ୍କ ନିକଟକୁ ଲେଖିଥିବା ପତ୍ରରୁ ଜଣାପଡ଼େ। ସେ ଲେଖିଥିଲେ, "ମୋତେ ପୁଣି ଜ୍ୱର ହେଲା। ମୁଁ ଶଯ୍ୟାଶାୟୀ। ମାନହାନୀ ମୋକଦ୍ଦମାର ତାରିଖ 14 କୁ ଅଛି; ଦିନକ ଆଗରୁ ପୁରୀ ଯିବା ପାଇଁ ମୋତେ ବନମାଳି (ବନମାଳି ଦାଶ, ଓକିଲ, ପୁରୀ) ଲେଖିଛନ୍ତି। ଆଜି ଲିଙ୍ଗରାଜଙ୍କର ଆସିବାର ଥିଲା, ସେ ବୋଧହୁଏ ଆସି ନାହାନ୍ତି। ମୁଁ ବେମାର ପଡ଼ିବା ଆଗରୁ 'ସମାଜ'ପାଇଁ କିଛି ଲେଖିଥିଲି ଏବଂ ତାହା ଗତକାଲି ପଠା ହୋଇଛି। ଆଜି ମୁଁ ଚିଠିଟି ଜଣକୁ ଡାକୁଛି ଓ ସେ ଲେଖୁଛନ୍ତି। ଆଜି ମଧ୍ୟ 'ସମାଜ'ପାଇଁ କିଛି ଲେଖା ପଠାଇବି ବୋଲି ଆଶା କରୁଛି। ମୁଁ ଦେଖୁଛି, ମୋ ସ୍ୱାସ୍ଥ୍ୟ ଏକାବେଳକେ ଭାଙ୍ଗି ପଡ଼ିଲାଣି। ମୋ ବୟସରେ ଜଣଙ୍କର ସ୍ୱାସ୍ଥ୍ୟହାନୀ ଘଟିଲେ ସେ ଆଉ ତାହା ଫେରି ପାଇବା ଅସମ୍ଭବ। ଯାହା ଜଣାପଡୁଛି, ମୋତେ ଏଣିକି ଗୋଟିଏ ସ୍ଥାନରେ ପଡ଼ି ରହିବାକୁ ହେବ। ଯାହା ଭଗବାନଙ୍କ ଇଚ୍ଛା। ଦୁଃଖୀଶ୍ୟାମକୁ କହିବ, ତାଙ୍କ ସଙ୍ଗରେ ବନ୍ୟାଞ୍ଚଳ ଗସ୍ତରେ ଯିବା ସମ୍ଭାବନା ଅତ୍ୟନ୍ତ କମ୍।"

**ସଂବାଦପତ୍ରରେ ନିନ୍ଦା**

ଓଡ଼ିଶାର ସାଧାରଣ କ୍ଷେତ୍ରରେ କାମ କରୁଥିବା ଲୋକମାନଙ୍କର ଦେଶବାସୀଙ୍କ ଠାରୁ ପ୍ରଶଂସା ପାଇବା ଭାଗ୍ୟ ହୁଏ ନାହିଁ। ଗୋପବନ୍ଧୁ ଏହାର ବ୍ୟତିକ୍ରମ ନ ଥିଲେ। ସେ ଜୀବନସାରା ଜନସେବା କରିଥିଲେ ଓ ଅତିମାନବିକତା ପ୍ରଦର୍ଶନ କଲା ପରି ନିଜ ପାର୍ଥୀବ ଓ ପୈତୃକ ଦାୟ ମଧ୍ୟ ତ୍ୟାଗ କରିଥିଲେ; ତଥାପି ଦେଶରେ ବିଶ୍ୱାସଘାତକଙ୍କର ଅଭାବ ନ ଥିଲା। ସେ ତାଙ୍କ ନିଜ ଦ୍ୱାରା ବା ତାଙ୍କ ମାଧ୍ୟମରେ ସଂଗୃହୀତ ହେଉଥିବା ସାଧାରଣ ପାଣ୍ଠିର ଅପବ୍ୟବହାର କରୁଛନ୍ତି ବୋଲି ଗୋପବନ୍ଧୁଙ୍କ ବିରୁଦ୍ଧରେ ଭିତ୍ତିହୀନ ଅଭିଯୋଗ କରି ଜଣେ ବେନାମୀ ପତ୍ର

ଲେଖକ 1928 ମସିହା ଜାନୁଆରୀ ମାସରେ କଟକର "ତରୁଣ ଉତ୍କଳ" (Young Utkal) ପତ୍ରିକାରେ ଗୋଟିଏ "ସଂପାଦକଙ୍କୁ ପତ୍ର" ପ୍ରକାଶ କରିଥିଲେ। ଅଭିଯୋଗ ଗୁଡ଼ିକ ନଗଣ୍ୟ ହେଲେ ହେଁ ଏହା ପଛରେ ଗୁରୁତର ଉଦ୍ଦେଶ୍ୟ ଥିଲା। ଏଥିରେ ଅଭିଯୋଗ ହୋଇଥିଲା ଯେ ଓଡ଼ିଶା ବନ୍ୟା ସାହାଯ୍ୟ ପାଣ୍ଠିରେ ବହୁ ଅର୍ଥ ଥିଲେ ହେଁ ଗୋପବନ୍ଧୁ ଏହାକୁ ମାଗଣା ସାହାଯ୍ୟ ଦେବା ଲାଗି ବ୍ୟବହାର ନ କରି ଘର ତୋଳିବା ଲାଗି ବେଶି ଅର୍ଥ ପଠାଇ ଦେଉଛନ୍ତି। ପୁଣି ଅଭିଯୋଗ ହୋଇଥିଲା ଯେ ଅସ୍ଥିକଙ୍କାଳସାର ଲୋକମାନଙ୍କ ଜୀବନ ଖାଦ୍ୟ ଓ ପୁଷ୍ଟି ଅଭାବରେ କ୍ରମେ କ୍ଷୟ ହେଉଥିବା ସ୍ଥଳେ ସେମାନଙ୍କ ପାଇଁ ଘର ତୋଳିବା ଭଲ କାମ ନୁହେଁ। ଏହି ଅଭିଯୋଗ ଯୋଗୁ ଗୋପବନ୍ଧୁଙ୍କ ବନ୍ଧୁ ଓ ସହକର୍ମୀମାନଙ୍କ ମଧ୍ୟରେ ଏପରି ଚାଞ୍ଚଲ୍ୟ ସୃଷ୍ଟି ହେଲା ଯେ ସେମାନେ ଏହି ଅସୂୟାପ୍ରଣୋଦିତ ଅଭିଯୋଗ ବିରୁଦ୍ଧରେ ପ୍ରତିବାଦ କରିବା ଲାଗି କଟକରେ ଏକ ବିରାଟ ସାଧାରଣ ସଭା କରିଥିଲେ। କଟକର ଆଡ଼ଭୋକେଟ ସତ୍ୟନାରାୟଣ ସେନଗୁପ୍ତ ଏହି ସଭାରେ ସଭାପତିତ୍ୱ କରିଥିଲେ। ଓଡ଼ିଶା ବନ୍ୟା ସାହାଯ୍ୟ କମିଟି ତରଫରୁ ଏକ ବିଜ୍ଞପ୍ତିରେ ବୁଝାଇ ଦିଆ ଯାଇଥିଲା, ବହୁସଂଖ୍ୟକ ଅନୁଷ୍ଠାନ ତରଫରୁ ବନ୍ୟା ସାହାଯ୍ୟ ଦିଆ ଯାଉଥିବାରୁ ଘର ତୋଳା ପାଇଁ ପାଣ୍ଠି ବିନିଯୋଗ କରିବା କିପରି ବେଶି ଦରକାର। ପଣ୍ଡିତ ଲିଙ୍ଗରାଜ ମିଶ୍ର, ଗୋପବନ୍ଧୁ ଚୌଧୁରୀ ଓ ସତ୍ୟ ନାରାୟଣ ସେନଗୁପ୍ତଙ୍କ ସମେତ ବହୁସଂଖ୍ୟକ ଲୋକଙ୍କ ସ୍ୱାକ୍ଷରରେ ପ୍ରତିବାଦ ପ୍ରକାଶିତ ହୋଇଥିଲା। "ଉତ୍କଳଦୀପିକା" ଭଳି ଗୋଟିଏ ପୁରାତନ ସଂବାଦପତ୍ରରେ ମଧ୍ୟ ଓଡ଼ିଶା ବନ୍ୟା ସାହାଯ୍ୟ କମିଟି ବିଶେଷତଃ ପଣ୍ଡିତ ଗୋପବନ୍ଧୁ ଦାସ ଙ୍କ ବିରୁଦ୍ଧରେ ଧାରାବାହିକ ଭାବରେ କୁତ୍ସାପ୍ରଚାର ହେଉଥିଲା। ଏହା ଅତ୍ୟନ୍ତ ପରିତାପର ବିଷୟ ଯେ ଜନସେବା କାର୍ଯ୍ୟରେ ଭୀଷଣ ପରିଶ୍ରମ କରିବା ଫଳରେ ଅସୁସ୍ଥ ହୋଇ ଗୋପବନ୍ଧୁଙ୍କ ଜୀବନ ଦୀପ ଆସ୍ତେ ଆସ୍ତେ ଲିଭି ଆସୁଥିବା ବେଳେ ତାଙ୍କ ଦେଶବାସୀମାନଙ୍କ ମଧ୍ୟରୁ କେତେଜଣ ତାଙ୍କ ଉପରେ କଳଙ୍କ ଆରୋପ କରିବାକୁ ଆଗେଇ ଆସିଲେ। ଏହି ନିଷ୍ଠୁର ଆକ୍ରମଣ ହେବା ପରେ ସେ ମାତ୍ର ଚାରି ମାସ ବଞ୍ଚି ରହିଥିଲେ। ଭବିଷ୍ୟତରେ ସାଧାରଣ କ୍ଷେତ୍ରର କର୍ମୀମାନଙ୍କ ସମ୍ମାନ ଓ ନୈତିକତାର ସୁରକ୍ଷା ଦାୟିତ୍ୱ ଦେଶବାସୀଙ୍କ ଠାରେ ନ୍ୟସ୍ତ କରି ଗୋପବନ୍ଧୁ ଚିର ନିଦ୍ରାରେ ଶୋଇ ପଡ଼ିଲେ।

# ଅନ୍ତିମ ମୁହୂର୍ତ୍ତ

ମୃତ୍ୟୁଶଯ୍ୟାରେ ମଧ ଗୋପବନ୍ଧୁ ଦେଶ କଥା ଭୁଲି ପାରି ନ ଥିଲେ। ସେ ସାଧାରଣ କାର୍ଯ୍ୟ ବିଷୟରେ ନିର୍ଦ୍ଦେଶ ଦେଇ ବନ୍ଧୁ ବନ୍ଧୁ ଓ ସହକର୍ମୀମାନଙ୍କ ନିକଟକୁ ଚିଠି ଲେଖିଲେ ? ସେ ନିୟମିତ ଭାବରେ 'ସମାଜ' ପାଇଁ ଲେଖା ପଠାଉ ଥିଲେ। 1928 ମସିହା ଜୁନ 16 ତାରିଖ ସକାଳେ ତାଙ୍କ ଅବସ୍ଥା ଉଦବେଗ ଜନକ ହୋଇଗଲା। ପୁରୀର ସିଭିଲ ସର୍ଜନଙ୍କୁ ତାରବାର୍ତ୍ତାରେ ଡକା ହେଲା। ସେ ଆସି ଚିକିତ୍ସା ବ୍ୟବସ୍ଥା କଲେ ଓ ସତ୍ୟବାଦୀର ଭାରପ୍ରାପ୍ତ ଡାକ୍ତରଙ୍କୁ ବିଶଦ ନିର୍ଦ୍ଦେଶ ଦେଇଗଲେ। ସେ କହିଲେ, "ରୋଗୀର ହୃଦୟ ବଡ଼ ଦୁର୍ବଳ ଜଣାପଡୁଛି। ତାଙ୍କୁ ବସିବାକୁ ଦିଅନ୍ତୁ ନାହିଁ। କିଛି ଫଳ ଆଣି ଶୀଘ୍ର ସତ୍ୟବାଦୀ ଆସିବାକୁ ଓ ଗୋପବନ୍ଧୁଙ୍କ ବଡ଼ ବ୍ଧାଇଁ ଅଧାପକ ରତ୍ନାକର ପତିଙ୍କୁ ସଂବାଦ ଦେବା ପାଇଁ କଟକରେ ଥିବା ରାଧାନାଥ ରଥଙ୍କ ପାଖକୁ ତାରବାର୍ତ୍ତା ପଠାହେଲା। ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାଶ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ରାମଚନ୍ଦ୍ର ଆଚାର୍ଯ୍ୟ ଏବଂ ଆହୁରି ଅନେକ ବନ୍ଧୁ ସଂପର୍କୀୟ ଓ ସହକର୍ମୀ ତାଙ୍କ ଶଯ୍ୟା ପାଖରେ ଥିଲେ। ଗୋପବନ୍ଧୁ କହିଲେ, "ନୀଳକଣ୍ଠ ତୁମେ ସବୁବେଳେ ମୋ ପାଖେ ପାଖେ ରହିବ।" ଷୋହଳ ତାରିଖ ମଧ-ରାତ୍ରି ବେଳକୁ ତାଙ୍କ ହୃଦୟ ଅତ୍ୟନ୍ତ ଦୁର୍ବଳ ହୋଇଗଲା ଓ ସେ ନିଃଶ୍ୱାସ ନେବାରେ କଷ୍ଟ ଅନୁଭବ କଲେ। ପରଦିନ ପୁରୀର ସିଭିଲ ସର୍ଜନଙ୍କୁ ପୁଣି ଡକାହେଲା। ସେ ରୋଗୀକୁ ପରୀକ୍ଷା କରି ସାରି ବାହାରେ ଆସି କହିଲେ, "ଆଉ ଆଶା ନାହିଁ। ଶେଷ ମୁହୂର୍ତ୍ତ ଆସି ଗଲାଣି।" ସେ କେତେ ଗୋଟି ଇଞ୍ଜେକସନ ଦେବାକୁ ପରାମର୍ଶ ଦେଇ ସମସ୍ତଙ୍କୁ ସତର୍କ କରି କହିଲେ "ମନେ ରଖନ୍ତୁ, ସଂକଟ ମୁହୂର୍ତ୍ତ ହେଉଛି ସନ୍ଧ୍ୟା 7ଟା, ରାତି 11ଟା ଓ ସକାଳ 4ଟା।" ଜଗବନ୍ଧୁ ସିଂହ ଓ ବନମାଳି ଦାଶ ଓକିଲମାନେ ସତ୍ୟବାଦୀକୁ ଧାଇଁ ଆସିଲେ। ଅନ୍ୟ କେତେ ଲୋକ ବି ଆସିଲେ। ତାଙ୍କର ସେ ପର୍ଯ୍ୟନ୍ତ ଚେତା ଥିଲା ଓ ତାଙ୍କ ମୁହଁ ପୂର୍ବ ପରି ସତେଜ ଥିଲା। ସେ ପୂର୍ବ ପରି ସ୍ପଷ୍ଟ, ଦୃଢ଼ ପ୍ରତିଜ୍ଞ ଓ ଉତ୍ସାହୀ ଭାବରେ କଥା କହି ପାରୁଥିଲେ। ସେ ଜଗବନ୍ଧୁ ସିଂହଙ୍କୁ କହିଲେ," ସମୟ ଓ କର୍ମ ଅନୁସାରେ ଆମ ଭିତରେ କେତେ ଥର ମତ ପାର୍ଥକ୍ୟ ହୋଇଛି। ସେ ସବୁ ମନେ ରଖିବ ନାହିଁ। କ୍ଷମା ଦେବ ଓ ଭୁଲି ଯିବ।" ଅପରାହ୍ନ ଗୋଟାକ ବେଳେ ଅନ୍ୟମାନଙ୍କ ପରାମର୍ଶ ଅନୁସାରେ ପଣ୍ଡିତ ଲିଙ୍ଗରାଜ ପଚାରିଲେ, "ଆପଣ ସଂପତ୍ତି ବାଡ଼ି ବିଷୟରେ

କିଛି ନିର୍ଦ୍ଦେଶ ଦେବାକୁ ଚାହାଁନ୍ତି କି?'' ଗୋପବନ୍ଧୁ କହିଲେ, ''ହଁ, ବହୁତ କିଛି କହିବାକୁ ଅଛି। ସମସ୍ତଙ୍କୁ ଡାକ। କାଗଜ କଲମ ଆଣ ଏବଂ ମୁଁ ଯାହା ଡାକୁଛି ଲେଖ।'' ସେଠାରେ ଉପସ୍ଥିତ ଥିବା ସମସ୍ତେ ତାଙ୍କୁ ଘେରି ବସିଲେ। କାଗଜ ଓ କଲମ ଧରି ଶ୍ରୁତଲିଖନ ନେବା ଲାଗି ଲିଙ୍ଗରାଜ ବସିଲେ। ବଡ଼ ଆଶ୍ଚର୍ଯ୍ୟର କଥା, ସେ ଅବସ୍ଥାରେ ମଧ୍ୟ ସେ ଏତେ ଡାକିଲେ ଯେ ଫୁଲସ୍କେପ କାଗଜରେ ଚାରି ପୃଷ୍ଠା ପୂର୍ଣ୍ଣ ହୋଇଗଲା ଏବଂ ଡାକିବା ବେଳେ ସେ ସଚେତନ ଥିଲେ, ତାଙ୍କର ଅବ୍ୟର୍ଥ ସ୍ମୃତିଶକ୍ତି ଥିଲା ଓ ସ୍ପଷ୍ଟ ସ୍ୱରରେ ଡାକୁଥିଲେ। ପାରିବାରିକ ଦେବତା ବିନୋଦ ବିହାରୀଙ୍କୁ ଦେବୋତ୍ତର ରୂପେ ଦିଆ ଯାଇଥିବା ସଂପତ୍ତି ସମେତ ଅନ୍ୟାନ୍ୟ ବ୍ୟକ୍ତିଗତ ସଂପତ୍ତି ପାଇଁ ନ୍ୟାସୀ ନିଯୁକ୍ତ କଲେ। ସେ ସତ୍ୟବାଦୀ ପ୍ରେସ, 'ସମାଜ' ସଂବାଦପତ୍ର, ସତ୍ୟବାଦୀ ବିଦ୍ୟାଳୟ, ବିଧବାଶ୍ରମ, ବନ୍ୟା ସାହାଯ୍ୟ ପାଣ୍ଠି ଏବଂ ତାଙ୍କ ମାର୍ଫତରେ ଥିବା ଅନ୍ୟ ସଂପତ୍ତିର ପରିଚାଳନା ପାଇଁ ବ୍ୟବସ୍ଥା କରିଥିଲେ। ସେତିକିବେଳେ ରାଧାନାଥ ରଥ ଓ ଅଧ୍ୟାପକ ରତ୍ନାକର ପତି କଟକରୁ ଆସି ପହଞ୍ଚିଲେ। ସେ ତାଙ୍କୁ ଦେଖି କହିଲେ,''ମୋ ମୃତ୍ୟୁ ପୂର୍ବରୁ ମୁଁ ମୋର ଶେଷ ଇଚ୍ଛାପତ୍ର ଓ ସଂପତ୍ତିର ବ୍ୟବସ୍ଥାପତ୍ର ଡାକୁଛି।''

ଅପରାହ୍ନ ସାଢ଼େ ପାଞ୍ଚଟା। ଇଚ୍ଛାପତ୍ର ଡାକି ସାରି ଗୋପବନ୍ଧୁ କହିଲେ, ''ସମସ୍ତେ ସାବଧାନ ରହ। ମୋ ଯିବା ବେଳ ହୋଇଗଲା। ମୁଁ ଯାଉଛି।'' ବନ୍ଧୁ ଓ ସହକର୍ମୀମାନେ ତାଙ୍କ ଚାରି ପାଖରେ ବସି ପ୍ରାର୍ଥନା କରିବାକୁ ସେ ନିର୍ଦ୍ଦେଶ ଦେଲେ। ସମସ୍ତେ ପ୍ରାର୍ଥନା କଲେ ଓ ଗୋପବନ୍ଧୁ ମଧ୍ୟ ପ୍ରାର୍ଥନାରେ ଯୋଗ ଦେଲେ। ପ୍ରାର୍ଥନା ମଝିରେ ଗୋପବନ୍ଧୁ କହିଲେ,''ମୋର ଊର୍ଦ୍ଧ୍ୱବାୟୁ ହେଉଛି କାହିଁକି? ଏଥିପାଇଁ ମୋ ଅଣ୍ଟା କଷ୍ଟ ହେଉଛି।'' ଆଚାର୍ଯ୍ୟ ହରିହର ଦାଶ ତାଙ୍କ ଅଣ୍ଟା ଘଷିବାକୁ ଆରମ୍ଭ କଲେ। ନାଡ଼ିର ସ୍ପନ୍ଦନ ବନ୍ଦ ହୋଇ ଯାଇଥିଲା ଏବଂ ବାରଂବାର ଇଞ୍ଜେକସନ ଦେବା ସତ୍ତ୍ୱେ କିଛି ଫଳ ହେଲା ନାହିଁ। ତାଙ୍କର ପୂର୍ଣ୍ଣ ଚେତନା ଥିଲା। ସେ ଛାତି ଉପରେ ହାତ ଦେଇ କହିଲେ,''ମୋ ଇଚ୍ଛା, ଏ ଊର୍ଦ୍ଧ୍ୱ ବାୟୁ ବନ୍ଦ ହୋଇ ଯାଆନ୍ତା କି?'' ଦୁଇ ମିନିଟ ପରେ ଏହା ବନ୍ଦ ହୋଇଗଲା। 1928 ମସିହା ଜୁନ ସତର ତାରିଖ ସନ୍ଧ୍ୟା ସାତ ଘଣ୍ଟା ପଚିଶ ମିନିଟ ସମୟରେ ଗୋପବନ୍ଧୁଙ୍କର ମୃତ୍ୟୁ ହେଲା। ଏହା ପୁରୀର ପ୍ରସିଦ୍ଧ ରଥଯାତ୍ରାର ପୂର୍ବଦିନ; ଏହାକୁ ଓଡ଼ିଶାରେ ଜଗନ୍ନାଥଙ୍କ ନବଯୌବନ ଦର୍ଶନ କୁହାଯାଏ।

ତାଙ୍କ ମୃତ୍ୟୁ ସଂବାଦ ସଂଗେ ସଂଗେ ବନାଗ୍ନି ପରି ପ୍ରଚାରିତ ହେବା ମାତ୍ରକେ ଦୁଇଘଣ୍ଟା ଭିତରେ ସେଠାକୁ ଜନସ୍ରୋତ ଛୁଟିଲା। ତାଙ୍କ ମରଶରୀରକୁ ଫୁଲ, ଡାଳ, କର୍ପୂରମାଳ ଓ ଜାତୀୟ ପତାକାରେ ସୁସଜ୍ଜିତ କରି ଗୋଟିଏ ବିରାଟ ଶବଯାତ୍ରାରେ ସାକ୍ଷୀଗୋପାଳ ମନ୍ଦିର ପଛ ପଟେ ଥିବା ତାଙ୍କ ପ୍ରିୟ ବକୁଳ ବନକୁ ନିଆଗଲା ଏବଂ ସେଠାରେ ଘିଅ ଓ ଚନ୍ଦନ କାଠରେ ପୋଡ଼ି ଦିଆଗଲା।

ଗୋପବନ୍ଧୁ ଚାଲିଗଲେ କିନ୍ତୁ ତାଙ୍କ ସ୍ମୃତି ଅଗଣିତ ଲୋକଙ୍କ ହୃଦୟରେ ଏବେ ବି ବଞ୍ଚି ରହିଛି। ତାଙ୍କ ପାଇଁ ସାକ୍ଷୀଗୋପାଳରେ ଗୋଟିଏ ସ୍ମୃତିସ୍ତମ୍ଭ ନିର୍ମିତ ହୋଇଛି। ମର୍ମର ପ୍ରସ୍ତର ଓ ଧାତୁ ନିର୍ମିତ ପ୍ରତିମୂର୍ତ୍ତିମାନ ଏଠି ସେଠି ଓ ସବୁଆଡ଼େ ତିଆରି ହୋଇଛି। ଶତଶତ ଅନୁଷ୍ଠାନର ନାମକରଣ ତାଙ୍କ ନାମାନୁସାରେ ହୋଇଛି। ମଣିଷର ମରଶରୀର ପରି ସବୁଗୁଡ଼ିକ କ୍ଷଣସ୍ଥାୟୀ କିନ୍ତୁ ଦେଶର ପୁରୁଷ ଓ ସ୍ତ୍ରୀମାନଙ୍କ ହୃଦୟରେ ସେ ଯେଉଁ ଆସନ ପାଇଛନ୍ତି, ତାହା ଚିର ଦିନ ରହିଥିବ। ସେ ଯଥାର୍ଥରେ ''ଆଧୁନିକ ଉତ୍କଳର ଜନକ।''

# ସାହିତ୍ୟିକ ଗୋପବନ୍ଧୁ

ଗୋପବନ୍ଧୁ ଦାସ ସାହିତ୍ୟିକ ହେବାକୁ ଆଗ୍ରହୀ ନ ଥିଲେ; ସେ ନିଜ ଚିନ୍ତାଧାରା ଓ ଆଦର୍ଶବାଦ ପ୍ରଚାର କରି ଲୋକଙ୍କୁ ଦେଶପ୍ରୀତିରେ ଉଦ୍‌ବୁଦ୍ଧ କରିବା ଲାଗି ସାହିତ୍ୟକୁ ମାଧ୍ୟମ ରୂପେ ବ୍ୟବହାର କରିଥିଲେ। ସେ ନିଜେ ନିଷ୍ଠାପର ଭାବରେ ସାହିତ୍ୟକୁ ଗ୍ରହଣ କରି ନ ଥିଲେ; ବରଂ ଓଡ଼ିଆ ଲୋକଙ୍କୁ ଉଦ୍‌ବୁଦ୍ଧ କରିବା ଉଦ୍ଦେଶ୍ୟରେ ସାହିତ୍ୟ ଲେଖିବାକୁ ସେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ଆଦି ସତ୍ୟବାଦୀ ବିଦ୍ୟାଳୟର ସହକର୍ମୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ। ନୀଳକଣ୍ଠ ଓ କୃପାସିନ୍ଧୁଙ୍କର ଦର୍ଶନ ଶାସ୍ତ୍ରରେ ସ୍ନାତକୋତ୍ତର ଉପାଧି ଥିଲା ଏବଂ ଗୋଦାବରୀଶ ଅର୍ଥନୀତିରେ ସ୍ନାତକୋତ୍ତର ଉପାଧି ପାଇଥିଲେ, କିନ୍ତୁ ଗୋପବନ୍ଧୁଙ୍କ ପ୍ରେରଣାରେ ଦେଶପ୍ରୀତି ବିକାଶ କରାଇବା ଉଦ୍ଦେଶ୍ୟରେ ସମସ୍ତଙ୍କୁ ଐତିହାସିକ ହେବାକୁ ପଡ଼ିଥିଲା। କୋଣାର୍କର ସୂର୍ଯ୍ୟ ମନ୍ଦିର ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ। କିମ୍ବଦନ୍ତୀ ଅଛି, ଏହି ମନ୍ଦିର ନିର୍ମାଣ ଲାଗି 1200 ବଢ଼େଇ ନିଯୁକ୍ତ ହୋଇଥିଲେ ହେଁ କେହି ଚୂଡ଼ା ମାରି ପାରିଲେ ନାହିଁ। ରାଜମିସ୍ତ୍ରୀ ବିଶୁ ମହାରଣାର ବାର ବର୍ଷର ପୁଅ ଧର୍ମପଦ ଏହା କରି ପାରିଥିଲା। ଏହା ଜଣା ପଡ଼ିଲେ କାଳେ ରାଜା ନରସିଂହ ଦେବ କାରିଗରମାନଙ୍କୁ ଅପମାନିତ କରିବେ ବା ସେମାନଙ୍କ ମୁଣ୍ଡ କାଟି ଦେବେ, ଏହି ଆଶଙ୍କାରେ ଧର୍ମପଦ ବଙ୍ଗୋପ-ସାଗରରେ ଆତ୍ମହତ୍ୟା କରିଥିଲା। ଏହି କିଂବଦନ୍ତୀ ପ୍ରତ୍ୟେକ ଓଡ଼ିଆକୁ ଉଦ୍‌ବୁଦ୍ଧ କରେ। ନୀଳକଣ୍ଠ 'କୋଣାର୍କ' ନାମକ ଏକ କାବ୍ୟ ଓ ଗୋପବନ୍ଧୁ '' ଧର୍ମପଦ'' ନାମକ ଗୋଟିଏ କ୍ଷୁଦ୍ରକାବ୍ୟ ରଚନା କରିଥିଲେ କିନ୍ତୁ କୃପାସିନ୍ଧୁ ଗଦ୍ୟରେ କୋଣାର୍କର ଇତିହାସ ଲେଖିଥିଲେ। ସେହିପରି କଟକର ବାରବାଟୀ ଦୁର୍ଗରେ ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦଦେବଙ୍କର ଏକ ନବତଳ ପ୍ରାସାଦ ଥିଲା; ଏହି ମୁକୁନ୍ଦଦେବଙ୍କୁ ପରାସ୍ତ କରି ମୁସଲମାନମାନେ ଓଡ଼ିଶାର ଶାସନ ଦାୟିତ୍ୱ ନେଇଥିଲେ। ବାରବାଟୀ ଦୁର୍ଗର ଭଗ୍ନାବଶେଷ ଯୁଗ ଯୁଗ ଧରି ଓଡ଼ିଆମାନଙ୍କୁ ଅନୁପ୍ରାଣିତ କରିଛି। କୃପାସିନ୍ଧୁ ବାରବାଟୀର ଇତିହାସ ଲେଖିଥିବା ବେଳେ ଗୋଦାବରୀଶ 'ମୁକୁନ୍ଦ ଦେବ' ନାଟକ ଲେଖିଥିଲେ ଓ ଗୋପବନ୍ଧୁ ମୁକୁନ୍ଦଦେବଙ୍କ ଉପରେ ଗୋଟିଏ କବିତା ରଚନା କରିଥିଲେ। ସେହିପରି ଗୋଦାବରୀଶ କାଞ୍ଚୀ ବିଜୟ କରିଥିବା ଓଡ଼ିଶାର ପୁରୁଷୋତ୍ତମ ଦେବଙ୍କ ଉପରେ ଆଉ ଗୋଟିଏ ନାଟକ ଲେଖିଥିଲେ ଓ କୃପାସିନ୍ଧୁ ଓଡ଼ିଶାର ଗୋଟିଏ ଇତିହାସ ରଚନା କରୁଥିଲେ, ଯାହା

ତାଙ୍କ ଅକାଳ ମୃତ୍ୟୁ ଯୋଗୁଁ ଅସମାପ୍ତ ରହିଛି। ଉତ୍ତର ଜୀବନରେ ଗୋଦାବରୀଶ ଜଣେ ଗୀତିକବି ଭାବରେ ଏବଂ ନୀଳକଣ୍ଠ ଜଣେ ଦାର୍ଶନିକ ନିବନ୍ଧ ଲେଖକ, ସାହିତ୍ୟ ସମାଲୋଚକ ଓ ତାଙ୍କ ଜୀବନର ଶ୍ରେଷ୍ଠ କୃତି, ଶ୍ରୀମଦ୍ ଭଗବତ୍ ଗୀତାର ଭାଷ୍ୟକାର ଭାବରେ ଓଡ଼ିଆ ସାହିତ୍ୟ ଇତିହାସରେ ବିଶିଷ୍ଟ ସ୍ଥାନର ଅଧିକାରୀ ହୋଇଛନ୍ତି। ଦୁହେଁ ନିଜ ଲେଖା ପାଇଁ ଜାତୀୟ ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି। ସତ୍ୟବାଦୀ ବିଦ୍ୟାଳୟ ଶିକ୍ଷକ ସାହିତ୍ୟିକମାନଙ୍କ ଭାଷା ଓ ଭାବ ଏତେ ଗମ୍ଭୀର ଥିଲା ଯେ ଓଡ଼ିଆ ସାହିତ୍ୟ ଇତିହାସରେ ସତ୍ୟବାଦୀ ଯୁଗ ନାମକରଣ ହୋଇ ସେମାନଙ୍କୁ ସ୍ୱତନ୍ତ୍ର ସ୍ଥାନ ଦିଆ ଯାଇଛି।

ଗୋପବନ୍ଧୁଙ୍କ ପାରିବାରିକ ପରଂପରା ତାଙ୍କୁ ଜଗନ୍ନାଥ ଦାସଙ୍କ ନବାକ୍ଷରରେ ରଚିତ ଶ୍ରୀମଦ୍ ଭାଗବତ ସହିତ ଘନିଷ୍ଠ ଭାବରେ ପରିଚିତ କରାଇ ଥିଲା। ଏହି ପୁରାଣର ଭାଷା ଏତେ ସରଳ ଯେ ଅପାଠୁଆ ଲୋକେ ଶୁଣିଲେ ବୁଝି ପାରନ୍ତି, ଏପରି କି ଧାଡ଼ିଗୁଡ଼ିକ ମନେରଖି ଦିଅନ୍ତି। ଗ୍ରାମଗହଳରେ ଲୋକମାନେ କୌଣସି ବିଷୟରେ ଯୁକ୍ତି କରୁଥିବା ବେଳେ ଭାଗବତରୁ ଏକାଧିକ ପଙ୍‌କ୍ତି ଉଦାହରଣ ଦେଉଥିବାର ଦେଖାଯାଏ। ଗୋପବନ୍ଧୁ ଏହି ପୁରାଣକୁ ଏତେ ଆଦର କରୁଥିଲେ ଯେ ସେ ବହୁ ପଙ୍‌କ୍ତି ମନେ ରଖିବା ସଂଗେ ସଂଗେ ନବାକ୍ଷରୀ ବୃତ୍ତରେ ନିଜେ କବିତା ଲେଖା ଆରମ୍ଭ କରିଦେଲେ। ସେ ସ୍କୁଲ ଓ କଲେଜରେ ପଢୁଥିବା ବେଳେ କବିତା ଲେଖୁଥିଲେ —ତାଙ୍କର କେତେଗୋଟି କବିତା ୧୮୨୨ରେ 'ଅବକାଶ ଚିନ୍ତା' ନାମରେ ପ୍ରକାଶିତ ହୋଇଥିଲା। ଏହାଛଡ଼ା ତାଙ୍କର ଆଉ ପାଞ୍ଚଗୋଟି କବିତା ପୁସ୍ତକ ପ୍ରକାଶିତ ହୋଇଛି। ସେଗୁଡ଼ିକ ହେଲା ଗୋ ମାହାତ୍ମ୍ୟ, ଧର୍ମପଦ, ବନ୍ଦୀର ଆତ୍ମକଥା, କାରା କବିତା ଓ ନଚିକେତା ଉପାଖ୍ୟାନ।

ଗୋପବନ୍ଧୁଙ୍କର ଗଦ୍ୟ ଶୈଳୀ ଅନନୁକରଣୀୟ ଥିଲା। ସେ କୌଣସି ଗଦ୍ୟ ପୁସ୍ତକ ରଚନା କରି ନ ଥିଲେ। ସେ ୧୨୧୫ରୁ 'ସତ୍ୟବାଦୀ'ନାମକ ଗୋଟିଏ ମାସିକ ପତ୍ରିକା ଓ ୧୨୧୨ରୁ 'ସମାଜ' ନାମକ ଏକ ସାପ୍ତାହିକ ସଂବାଦପତ୍ର ପ୍ରକାଶ କରୁଥିଲେ। ସେ ଏହି ପତ୍ରିକା ଦୁଇଟିରେ ଧାରାବାହିକ ଭାବରେ ଲେଖୁଥିଲେ ଏବଂ ଏଥିରେ ପ୍ରକାଶିତ ତାଙ୍କ ଭାବଧାରା ସମନ୍ୱିତ ଲେଖାଗୁଡ଼ିକ ଏତେ ଉଚ୍ଚକୋଟୀର ଥିଲା ଯେ ସେଗୁଡ଼ିକୁ ଓଡିଆ ସାହିତ୍ୟର ରତ୍ନ କୁହାଯାଏ। ଏବେ ଗୋପବନ୍ଧୁ ଶତବାର୍ଷିକୀ ଉପଲକ୍ଷେ ତନ୍ମଧ୍ୟରୁ କେତେକ ପୁସ୍ତକାକାରରେ ପ୍ରକାଶିତ ହୋଇଛି।

ଗୋପବନ୍ଧୁଙ୍କ ଅବକାଶ ଚିନ୍ତାରେ ବହୁ ଉନ୍ନତ ଚିନ୍ତାଧାରା ସନ୍ନିବିଷ୍ଟ ହୋଇଛି। ସେଥିରେ ଓଡ଼ିଶାର ବିଶିଷ୍ଟ କବି ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ ଓ୍ ଉପେନ୍ଦ୍ର ଭଞ୍ଜ, ପ୍ରଖ୍ୟାତ ରାଜା ଅନଙ୍ଗଭୀମ ଦେବ ଓ ପୁରୁଷୋତ୍ତମ ଦେବଙ୍କ ବିଷୟରେ ବର୍ଣ୍ଣନାତ୍ମକ କବିତା, କାଠଯୋଡ଼ି କୂଳ, ଖଣ୍ଡଗିରି, କଟକର ପଥରବନ୍ଧ ଓ ବାରବାଟୀ ଦୁର୍ଗ ବିଷୟରେ ପ୍ରକୃତ ବର୍ଣ୍ଣନା ଏବଂ ଗଞ୍ଜାମ ଜାତୀୟ ସମ୍ମିଳନୀ, ଲାଳସା, କ୍ରୋଧ, ରେଭେନ୍‌ସା କଲେଜରୁ ବିଦାୟ, ଛବିଶ ବର୍ଷ ବୟଃକ୍ରମ ପ୍ରାପ୍ତି

ଓ ଦୁଃଖ ଆଦି ସଂବନ୍ଧରେ ଭାବ ଗର୍ଭକ କବିତା ରହିଛି। ସେ ଏହି କବିତାଗୁଡ଼ିକ ରଚନା କରିଥିବା ବେଳେ ତାଙ୍କର ଅପରିପକ୍ୱ ଚିନ୍ତାଧାରା ଥିଲା, ତଥାପି ଏଗୁଡ଼ିକରେ ତାଙ୍କ ଭବିଷ୍ୟତ ଚିନ୍ତାଧାରାର ଅଙ୍କୁରୋଦ୍‌ଗମ ହୋଇଥିବା ପରି ଜଣାପଡ଼େ। ଉଦାହରଣ ସ୍ୱରୂପ, ସେ ଲେଖିଛନ୍ତି —

''ଅସଂଖ୍ୟ କଳ୍ପନା କଳି ରହିଛି ଅନ୍ତରେ
ବିକଶିତ ହୋଇନାହିଁ ଗୋଟିଏ ଅବଧି।''
''ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ।''
''ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧି ବିଶ୍ୱ ହିତ ତେଜି ଅଭିମାନ।''
''ସ୍ୱାଧୀନତା ପ୍ରିୟେ! ଧରି ଅପର ଚରଣ
ଭାଗ୍ୟ ଅରଜନୁଁ ଶ୍ରେୟ ମଣିଲୁ ମରଣ।''
''ସଂସାର ତୁମୁଳ ରଣ ପ୍ରାଙ୍ଗଣେ,
ଉତ୍କଳର ଦୀନ ତନୟଗଣେ,
ପଛରେ କେବେ ହେଁ ନ ପଡ଼ୁ ଦେବ,
ଶ୍ରୀଛାମୁରୁ ଏହି ଆଦେଶ ହେବ।
ଘେନି ଅପୂର୍ବ ଉତ୍ସାହ ଯେ
ଭାରତର ମହା-ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ ଯେ।''

ଏଗୁଡ଼ିକ ଜଣେ ବିଂଶ ବର୍ଷୀୟ ଯୁବକର ଚିନ୍ତାଧାରାର ନମୁନା। କାରା କବିତା ଓ ବନ୍ଦୀର ଆତ୍ମକଥା କବିତା ପୁସ୍ତକ ଦୁଇଟିକୁ ଗୋପବନ୍ଧୁ ହଜାରୀବାଗ କାରାଗାରରେ ଥିବା ବେଳେ (1923-24) ଲେଖିଥିଲେ। କାରା କବିତାରେ ତେର ଗୋଟି କବିତା ଅଛି; ଏଥି ମଧ୍ୟରେ ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ, ବନ୍ଦୀର ସ୍ୱଦେଶ ଚିନ୍ତା, ବନ୍ଦୀର ସନ୍ଧ୍ୟା ଭାବନା ଓ ନିତ୍ୟଧାମ ନୀଳାଚଳ ଆଦି ବିବିଧ ବିଷୟକ କବିତା ଅନ୍ତର୍ଭୁକ୍ତ। ବନ୍ଦୀର ଆତ୍ମକଥା ଗୋଟିଏ 193 ପଦର କବିତା ପୁସ୍ତକ। କାରାବାସ ଯୋଗୁ ସେ ଓଡ଼ିଶାର ବନ୍ୟା ଓ ମରୁଡ଼ି ପ୍ରପୀଡ଼ିତ ଲୋକ, ବିଶେଷତଃ କନିକାର ଯେଉଁ ଲୋକଙ୍କ ପାଇଁ ସେ ମୋକଦ୍ଦମାରେ ପଡ଼ିଥିଲେ, ସେମାନଙ୍କ ସେବାରୁ ବଞ୍ଚିତ ହୋଇ ଥିବାରୁ ସେ କ୍ଷୋଭ ପ୍ରକାଶ କରିଛନ୍ତି। ମହାତ୍ମା ଗାନ୍ଧିଙ୍କ ପ୍ରତିଶ୍ରୁତ ଆସନ୍ନ ସ୍ୱାଧୀନତା ବିଷୟରେ ଭାବ ବିହ୍ୱଳ ହୋଇ ସେ ନୈରାଶ୍ୟରେ ଲେଖିଥିଲେ,

''ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼।

ଅରଟ ଚଳାଅ ପ୍ରତି ଘରେ ଘରେ,
ଗ୍ରାମର କଳହ, ତୁଟାଅ ଗ୍ରାମରେ
ଗୃହରେ ଅରଟ, ଗ୍ରାମେ ପଞ୍ଚାୟତ,
ଗ୍ରାମବାସୀଗଣ ମଧ୍ୟେ ଏକମତ
ସ୍ୱରାଜ୍ୟ-ସାଧନ ଏହି ତିନିପଦ,
ପାଳିଲେ ଖଣ୍ଡିବ ଉତ୍କଳ-ବିପଦ।
ଜାତୀୟ ମମତା ବିଶ୍ୱଜନ-ପ୍ରୀତି,
ଉତ୍କଳବାସୀର ହେଉ ଏହା ନୀତି
ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ।
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ।''

ବିଷ୍ଣୁ ମହାରଣାର ଆତ୍ମୋତ୍ସର୍ଗ ବିଷୟରେ ଗୋପବନ୍ଧୁ ଧର୍ମପଦରେ ଲେଖିଛନ୍ତି,

''ଏ ଜଗତେ କାହା ପୁଅ ବା କାହାର
ସମସ୍ତ ମାୟା ଭିଆଣ।
ସାର୍ଥକ-ଜନମ ତାର ଏକା ସିନା
ପର ହିତେ ଯାର ପ୍ରାଣ।''

ଏହି କ୍ଷୁଦ୍ର ଗୀତି—କାବ୍ୟରେ ଦେଶପ୍ରୀତି, ଅତୀତର ଐତିହ୍ୟ ପ୍ରତି ମମତା ଓ ବିଭୁପଦ ତଳେ ଆତ୍ମୋତ୍ସର୍ଗ ପୂରି ରହିଛି। କବି ତାଙ୍କ ଅବତରଣିକାରେ ଲେଖିଛନ୍ତି—

''ଯଦ୍ୱାରା ସର୍ବାଧିକ ସଂଖ୍ୟକ ଲୋକଙ୍କର ସର୍ବାଧିକ ପରିମାଣରେ ହିତ ହୁଏ, ତାହା ହିଁ ମାନବର କର୍ତ୍ତବ୍ୟ।''

1922ରେ ଗୋ ମାହାତ୍ମ୍ୟ ପ୍ରକାଶିତ ହୋଇଥିଲା। ଗୋ ଜାତି ପ୍ରତି ମଣିଷ କେତେ ଋଣୀ, ତାହା ସେ ଗୋଟିଏ କ୍ଷୁଦ୍ରଗଳ୍ପ ଛଳରେ ବର୍ଣ୍ଣନା କରିଛନ୍ତି। ବିଷୟ ବସ୍ତୁ ଶ୍ରୀମଦ୍ ଭାଗବତ ଓ ମହାଭାରତରୁ ସଂଗୃହୀତ ହୋଇଛି। କବିଙ୍କ ନାମ ଗୋପବନ୍ଧୁ ଦାସ ହେଲେ ହେଁ ସେ ନିଜକୁ ଗୋପଦାସ ବା ଗୋପାଳକ ମାନଙ୍କ ଭୃତ୍ୟ ବୋଲି ବର୍ଣ୍ଣନା କରଛନ୍ତି।

''ଗୋସେବା ସର୍ବଧର୍ମ ସାର। ଏହା ବୁଝିଲେ ସର୍ବନର।
ହୋଇବ ଏ ସଂସାର ସ୍ୱର୍ଗ। ଲଭିବେ ଲୋକେ ଅପବର୍ଗ।
ଏଣେ ହୋଇବ ବିଶ୍ୱହିତ। ଗୋଲୋକ ନାଥ ହେବେ ପ୍ରୀତ।
ଲଭିବ ଧନ, ସୁତ, ଯଶ। ଅନ୍ତେ ଗୋଲୋକଧାମେ ବାସ।
ଗୁରୁ ଯା ଦେଲେ ଉପଦେଶ। ଗୀତେ ଭଣିଲା ଗୋପଦାସ।

ଗୋମାହାତ୍ମ୍ୟ ଗୋଟିଏ ଏକୋଇଶ ସର୍ଗ ବିଶିଷ୍ଟ କାବ୍ୟ।

ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ କଠୋପନିଷଦର ଗୋଟିଏ ଗଳ୍ପ ଉପରେ ଆଧାରିତ। ଏଥିରେ ଦୁଇଟି ଅଧ୍ୟାୟ ଓ ସାତଗୋଟି ବଲ୍ଲୀ ଅଛି। ନଚିକେତା ବିଷୟରେ

ଏହା ଗୋଟିଏ ସରଳ ବର୍ଣ୍ଣନା ହୋଇଥିଲେ ହେଁ ଏଥିରେ ଗୋପବନ୍ଧୁଙ୍କ ଗୋଜାତି-ପ୍ରୀତି ମଧ୍ୟ ପ୍ରତିଫଳିତ । ସେ ଲେଖିଛନ୍ତି,

''ଗୋଦାନେ ଭୋଗଇ ନର ସ୍ୱର୍ଗେ ମହାସୁଖ,
ଗୋଦାନେ କଦାପି ପିତା ନ ହୁଅ ବିମୁଖ ।
ଉପଯୁକ୍ତ ଗାଭୀ ଦିଅ ଉପଯୁକ୍ତ ଜନେ,
ଗୋଦାନର ଫଳ ମୁଁ ତ ଦେଖିଲି ନୟନେ ।
ଗୋଦାନ ସମାନ ନୁହେଁ, ଅନ୍ୟ ମୋର ମତେ
କରନ୍ତୁ ମାନବ ସର୍ବେ ଗୋ ସେବା ଜଗତେ ।
ଇହପରକାଳେ ସୁଖ ଗୋ ସେବା, ଗୋଦାନେ,
ଗୋଜାତିକୁ ପାଳ ଜନେ, ସଦା ସାବଧାନେ ।

ଏହି ଗୀତି କବିତା କାବ୍ୟ ଓ କବିତା ବ୍ୟତୀତ, ତାଙ୍କ ଗଦ୍ୟ ରଚ଼ନାଗୁଡ଼ିକ ଓଡ଼ିଆ ସାହିତ୍ୟର ରତ୍ନ ସ୍ୱରୂପ । ଏଗୁଡ଼ିକ ପାଠ କଲେ ଚିନ୍ତା ଉଦ୍ରେକ ହୁଏ । ଉଦାହରଣ ସ୍ୱରୂପ, ସେ ସତ୍ୟବାଦୀର ପ୍ରଥମ ସଂଖ୍ୟାରେ ଲେଖିଥିଲେ,''ଓଡ଼ିଶା ଆମର କର୍ମକ୍ଷେତ୍ର ସତ କିନ୍ତୁ ଏହା ଭାରତ ବା ବିସ୍ତୀର୍ଣ୍ଣ ବ୍ରହ୍ମାଣ୍ଡରୁ ଅଲଗା ନୁହେଁ । ଓଡ଼ିଆ ଓ ଭାରତୀୟମାନେ ସମଗ୍ର ମାନବ ଜାତିର ଅଂଶ ବିଶେଷ । ମାତୃଭୂମିର ସେବା କରିବାକୁ ହେଲେ ଆମେ ସମଗ୍ର ବିଶ୍ୱର ସେବା କରୁଛୁ ବୋଲି ସନ୍ତୋଷ ମିଳିବ, ଦେଶପ୍ରୀତି ଓ ବିଶ୍ୱପ୍ରୀତିରେ ବିରୋଧାଭାସ ନାହିଁ; ଅପରନ୍ତୁ ବିଶ୍ୱପ୍ରେମ ନ ଥିବା ଲୋକ ହୃଦୟରେ ଜାତୀୟତା ଓ ଦେଶପ୍ରୀତି ରହି ପାରେ ନା । ତେଣୁ ଆମେ ଉତ୍କଳ ମାତାର ସେବା କଲେ ଏକାଧାରରେ ଭାରତ ଓ ବିଶ୍ୱର ସେବା କରି ପାରିବା; ଓଡ଼ିଆମାନେ ଉନ୍ନତି କଲେ ତଦ୍ୱାରା ମାନବ ଜାତିର ସମୃଦ୍ଧି ହେବ । ଆମେ ଓଡ଼ିଆର ପ୍ରାଣରେ ବିଶ୍ୱପ୍ରେମ ଅନୁଭବ କରିବା ଏବଂ ଓଡ଼ିଆର ହୃଦୟରେ ସମଗ୍ର ମାନବ ଜାତିର ହୃଦୟ ସ୍ପନ୍ଦନ ଶୁଣି ପାରିବା ।''

ଭାଷା ବିଷୟରେ ସେ ଲେଖିଛନ୍ତି,

''ଲୋକେ ଯେଉଁ ଭାଷା ବୁଝନ୍ତି, ତାହା ହିଁ ସରକାରଙ୍କ ଭାଷା ହେବା ଉଚିତ । ଶାସନର ଧାରା ଓ କୌଶଳ ଲୋକଙ୍କ ପାଇଁ ଅବୋଧ ହେବା ବାଞ୍ଛନୀୟ ନୁହେଁ । ଭାରତରେ ପ୍ରାଦେଶିକ ସ୍ୱତନ୍ତ୍ରତା ଚାଲୁ କରି ଜନସାଧାରଣଙ୍କୁ ସେଥିରେ ଭାଗ ନେବା ଓ ଶାସନକୁ ନିୟନ୍ତ୍ରଣ କରିବା ଅଧିକାର ଦେବାକୁ ହେଲେ ଇଂରେଜି ଅପେକ୍ଷା ପ୍ରାଦେଶିକ ଭାଷାର ପ୍ରଚ଼ଳନ ବେଶି ଦରକାରୀ ବୋଲି ସହଜେ ଅନୁମେୟ ।''

ଗଣସାହିତ୍ୟ ବିଷୟରେ ସେ ଲେଖିଛନ୍ତି,

''ଗଣସାହିତ୍ୟ ନ ଥିଲେ ଜାତି ଉଧେଇ ପାରିବ ନାହିଁ । ସମାଜରେ କେବଳ ଉଚ୍ଚ ଶ୍ରେଣୀର ଲୋକ ଥିଲେ ଗଣସାହିତ୍ୟର ଆବଶ୍ୟକତା ନ ଥାନ୍ତା, କିନ୍ତୁ ସମାଜରେ ଏପରି ଅଶିକ୍ଷିତ ଓ ଅର୍ଦ୍ଧ ଶିକ୍ଷିତ ଲୋକ ଅଛନ୍ତି, ଯେଉଁମାନେ ବିଲରେ ହଳ

କରନ୍ତି, ବଗିଚାରେ ପାଣି ମଡ଼ାନ୍ତି, ନଦୀରେ ଡଙ୍ଗା ବୁହାନ୍ତି, କାଠ କାଟନ୍ତି ଓ ଲୁଗା ବୁଣନ୍ତି। ଉଚ୍ଚ ଶ୍ରେଣୀ ଲୋକେ ସମାଜର ମସ୍ତିଷ୍କ ହୋଇ ପାରନ୍ତି, କିନ୍ତୁ ସାଧାରଣ ଲୋକ ହେଉଛନ୍ତି ହୃଦୟ; ସେମାନଙ୍କ ଠାରେ ଜାତିର ଆତ୍ମା ରହିଛି। ସେମାନଙ୍କର ବି ସୌନ୍ଦର୍ଯ୍ୟ ପିପାସା ଅଛି, ଆନନ୍ଦ ଓ ମନୋରଞ୍ଜନ ପାଇଁ କ୍ଷୁଧା ଅଛି ଓ ବିକାଶ ପାଇଁ ଆଗ୍ରହ ରହିଛି। ସେମାନଙ୍କ ଇଚ୍ଛା ଓ ଅଭୀପ୍ସା ପୂରଣ ଲାଗି ସେମାନଙ୍କର ବି ସାହିତ୍ୟ ଲୋଡ଼ା; ଉପଯୁକ୍ତ ସାହିତ୍ୟ ଅଭାବରୁ ସେମାନଙ୍କ ଆଗ୍ରହ ଲୋପ ପାଇ ଯାଇପାରେ ଅଥବା ଅବାଞ୍ଛନୀୟ ପ୍ରଣାଳୀରେ ଗତି କରିପାରେ।''

ସାକ୍ଷରତା ସଂବନ୍ଧରେ ତାଙ୍କ ମତ ହେଉଛି,

''ଆତ୍ମା ଓ ପରମାତ୍ମା ଉଭୟ ଅକ୍ଷର, ତେଣୁ ନିରକ୍ଷର ହେବା ପାପ। ସମାଜର ପ୍ରତ୍ୟେକ ଲୋକର ଅନ୍ତତଃ ଅକ୍ଷର ପରିଚୟ ଥିବା ଆବଶ୍ୟକ। ଏହା ଛଡ଼ା ଏ ଜାତିର ସଦ୍‌ଗତି ନାହିଁ।''

ଲିପି ବିଷୟରେ ତାଙ୍କର ମୌଳିକ ଚିନ୍ତାଧାରା ଥିଲା। ତାଙ୍କ ମତରେ,

''ବଙ୍ଗଳା ଓ ଦେବନାଗରୀ ଉଭୟରେ ଦଶ ପ୍ରକାରରୁ ଅଧିକ ଲିପି ଅଛି କିନ୍ତୁ ଓଡ଼ିଆରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ହେବାର ପ୍ରଥମ ଅବସ୍ଥାରେ ଖ୍ରୀଷ୍ଟଧର୍ମ ପ୍ରଚାରକମାନେ ଇଂଲିଶ ବଡ଼ି ଉପରେ ଯେଉଁ ଛୋଟ ପାଇକା ଅକ୍ଷର ଚଳାଇ ଥିଲେ, ତାହା ଏବେ ବି ଅଛି। ଲେଖକ, ମୁଦ୍ରାକର ଓ ପାଠକମାନେ ବିଭିନ୍ନ ଆକୃତିର ଚିତ୍ତାକର୍ଷକ ଚିତ୍ରିତ ଲିପିର ଆବଶ୍ୟକତା ଅନୁଭବ କରୁଥିଲେ ହେଁ କେହି ଅର୍ଥ ଓ ଶ୍ରମ ବ୍ୟୟ କରି ଏହି ଦୀର୍ଘ କାଳୀନ ଅଭାବ ଦୂର କରୁ ନାହାନ୍ତି। ଏହି ଲିପି-ଗତ ଅସୁବିଧା ଯୋଗୁଁ ବହି ଗୁଡ଼ିକର ପ୍ରସାରରେ ବାଧା ଉପୁଜୁଛି। ପାଠକମାନଙ୍କ କ୍ରମିକ ସଂଖ୍ୟା ବୃଦ୍ଧି ଏବଂ ରୁଚି ଓ ସୌନ୍ଦର୍ଯ୍ୟ ପ୍ରତି କ୍ରମବର୍ଦ୍ଧିଷ୍ଣୁ ଦୃଷ୍ଟି ଯୋଗୁଁ ବିଶେଷତଃ ବହିଗୁଡ଼ିକର ଶସ୍ତା ସଂସ୍କରଣ ବାହାର କରିବାରେ ଆବଶ୍ୟକତା ହେତୁ ବିଭିନ୍ନ ପ୍ରକାର ଲିପିର ତିଆରି ଓ ବ୍ୟବହାର ଅତ୍ୟାବଶ୍ୟକ ହୋଇ ଉଠିଛି।''

ଏହିପରି ଭାବରେ ଗୋପବନ୍ଧୁ ସାହିତ୍ୟର ପ୍ରତ୍ୟେକ ବିଭାଗକୁ ଅଳଂକୃତ କରିଥିଲେ ଓ ସାହିତ୍ୟ ମାଧ୍ୟମରେ ନିଜ ଦେଶବାସୀଙ୍କ ମଧ୍ୟରେ ଉଚ୍ଚ ଓ ଆଦର୍ଶ ମୂଳକ ଚିନ୍ତାଧାରା ପ୍ରକାଶ କରିଥିଲେ। ବିଜ୍ଞ ଲୋକଙ୍କ ମତରେ ଗୋପବନ୍ଧୁଙ୍କ ଠାରୁ ଉତ୍କୃଷ୍ଟତର କବି ଥାଇ ପାରନ୍ତି, କିନ୍ତୁ ଏବେ ବି ତାଙ୍କ ଗଦ୍ୟ ଶୈଳୀ ଅପ୍ରତିଦ୍ୱନ୍ଦୀ ଭାବେ ରହିଛି।



ଗୋପବନ୍ଧୁ ଦାସ ଓଡ଼ିଶାର ଘରେ ଘରେ 'ଉତ୍କଳମଣି' ନାମରେ ସୁପରିଚିତ। ତାଙ୍କର ଏହି ଜୀବନୀ ଏପରି ଜଣେ ରାଜନୀତିକ ନେତାଙ୍କର, ଯିଏକି ପ୍ରାଦେଶିକତାର ସଂକୀର୍ଣ୍ଣ ଧାରାକୁ ନେଇ ରାଷ୍ଟ୍ରୀୟ ମହତ୍ତ୍ୱର ପ୍ରବଳ ସ୍ରୋତରେ ପରିଣତ କରିଥିଲେ। ଲେଖକ ଗୋପବନ୍ଧୁଙ୍କର ଅନ୍ତରଙ୍ଗ ବନ୍ଧୁ ଓ ସହଯୋଗୀ ମାନଙ୍କର ସଂସ୍କରଣର ଆଧାର ନେଇ ଏହି ଜୀବନୀର ମୂଳଦୂଆ ପ୍ରସ୍ତୁତ କରିଛନ୍ତି। ସେ ଏହି ଜୀବନୀ ମାଧ୍ୟମରେ ଦେଖାଇଛନ୍ତି; କିପରି ଗୋପବନ୍ଧୁ ତାଙ୍କର ସଂପୂର୍ଣ୍ଣ ଜୀବନ ତତ୍କାଳୀନ ଓଡ଼ିଶାର ବ୍ୟାପକ ସାମାଜିକ ଓ ଆର୍ଥିକ ସମସ୍ୟା ଗୁଡ଼ିକର ସମାଧାନ ଲାଗି ଉତ୍ସର୍ଗ କରିଥିଲେ ଯହିଁରୁ ଅନେକ ସମସ୍ୟା ଅଦ୍ୟାପି ବିଦ୍ୟମାନ। ଗୋପବନ୍ଧୁ ତାଙ୍କ ସମୟ ଅନୁସାରେ ସମସ୍ୟା ଗୁଡ଼ିକର ଯାହା ସମାଧାନ ଦେଖାଇ ଥିଲେ, ସେଗୁଡ଼ିକ ଆଧୁନିକ ପାଠକଙ୍କୁ ଆଜି ବି ସେତିକି ପ୍ରାସଙ୍ଗିକ ବୋଧ ହେବ।

ଡଃ. ଶ୍ରୀରାମଚନ୍ଦ୍ର ଦାଶ (ଜନ୍ମ 1919) ଜଣେ ପ୍ରତିଭାବାନ୍ ଛାତ୍ର ଥିଲେ ଓ ପଶ୍ଚିମ ଜର୍ମାନୀର ବିଶ୍ୱବିଦ୍ୟାଳୟରୁ ସେ ଡକ୍ଟରେଟ୍ ଉପାଧି ଲାଭ କରିଛନ୍ତି। ତାଙ୍କର ବିଭିନ୍ନ ଶୈକ୍ଷିକ, ସାହିତ୍ୟିକ ଓ ସାଂସ୍କୃତିକ ସଂସ୍ଥା ସହ ସମ୍ପର୍କ ରହିଛି। ସେ ଓଡ଼ିଆ ଓ ଇଂରାଜୀ ଦୁଇଟି ଭାଷାରେ ଲେଖନ୍ତି। ସେ ବର୍ତ୍ତମାନ ସୁଦ୍ଧା ଚାଳିଶିଟି ପୁସ୍ତକ ଲେଖିଛନ୍ତି ଓ ତାଙ୍କର ବହୁ ଗବେଷଣାତ୍ମକ ପ୍ରବନ୍ଧ ଓ ବିଶିଷ୍ଟ ରଚନା ମଧ୍ୟ ପ୍ରକାଶିତ ହୋଇଛି।



ଟ. 24.00

ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ